## ଉଚ୍ଚପ୍ରାଥମିକ

# ଭୂଗୋଳପାଠ ।

## ଉପଦେଶ ।

(୧) ବାଲକମାନେ ବାହାର ସ୍ଥାନ ପରିଭ୍ରମଣ କରି ଭୌଗୋଳିକ ବିବରଣମାନ ଶିକ୍ଷା କରିବେ ।

(୨) ସେମାନେ ପ୍ରତିଦିନ ନିଜ ନିଜ ନୋଟବହିରେ ସୂର୍ଯ୍ୟ ଚନ୍ଦ୍ର ପ୍ରଭୃତିଙ୍କର ଗତି, ଛାୟାର ହ୍ରାସବୃଦ୍ଧି, ବାୟୁର ଗତି ଓ ଉଷ୍ଣତା, ବୃଷ୍ଟିର ପରିମାଣ, ମେଘ, ଶଶିର ଓ କୁହୁଡ଼ିର ଉତ୍ପତ୍ତି ଏବଂ ଋତୁପରିବର୍ତ୍ତନାଦି ପ୍ରାକୃତିକ ଘଟଣାମାନ ପରୀକ୍ଷା କରିବାରେ ଲେଖି ରଖିବେ ।

(୩) ସେମାନେ ଭୂଗୋଳବିଦ୍ୟା ଶିକ୍ଷା କରିବା ସମୟରେ ମାନଚିତ୍ର ଜମା ଦ୍ୟାଣ୍ଡମ୍ୟାପ୍ ବ୍ୟବହାର କରିବେ ।

(୪) ସେମାନେ ଗ୍ରାମ, ଜିଲ୍ଲା ବା ଦେଶର ସୀମାସୂଚକ ମାନଚିତ୍ର କେବଳ ଘରୁ ଅଙ୍କନ କରିନେବେ ଏବଂ ବିଦ ାଳୟରେ ପ୍ରଧାନ ପ୍ରଧାନ ସ୍ଥାନ, ନଦୀ ଓ ପର୍ବତାଦିର ଅବସ୍ଥିତି ତହିଁରେ ନିର୍ଦ୍ଦେଶ କରିବେ ।

(୫) ସେମାନେ ରିଲିଫ୍ ମ୍ୟାପ୍ ପ୍ରସ୍ତୁତ କରିବା ନିମନ୍ତେ ମାଟି, ବାଲି ଓ ପେଷ୍ଟବୋର୍ଡ୍ମାନ ସଙ୍ଗରେ ନେବେ ।

## ବାଲେଶ୍ୱର ଜିଲ୍ଲା ।

### ୧ । ରିଲିଫ୍ ବିଷୟକ ଶିକ୍ଷା ।

ବାଲେଶ୍ୱର ଜିଲ୍ଲାର ଉତ୍ତରରେ ମେଦିନୀପୁର ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ କଟକ ଜିଲ୍ଲା ଓ ପଶ୍ଚିମରେ ନୀଲଗିରି

ପର୍ବତଶ୍ରେଣୀ । ଏହାର ଦୈର୍ଘ୍ୟ ପ୍ରାୟ ୭୦ ମାଇଲ ଓ ପ୍ରସ୍ଥ ଉତ୍ତରାଂଶରେ ୩୦ ମାଇଲ, ମଧ୍ୟାଂଶରେ ୧୦ ମାଇଲ ଓ ଦକ୍ଷିଣାଂଶରେ ୪୦ ମାଇଲ ଅଟେ । କ୍ଷେତ୍ରଫଳ ୨୦୮୫ ବର୍ଗମାଇଲ କିନ୍ତୁ ଭାରତବର୍ଷର କ୍ଷେତ୍ରଫଳ ୧୫ ଲକ୍ଷ ବର୍ଗମାଇଲ । ସୁତରାଂ ଏହା ଭାରତବର୍ଷର ୭୦୦ ଭାଗରୁ ଏକଭାଗ ଅଟେ । ଏହାର ମଧ୍ୟ କେତେକାଂଶରେ ଭାରତବର୍ଷ ପରି ।

### ୨ । ପ୍ରାକୃତିକ ସୀମା ଓ ନଦୀ ।

ବାଲେଶ୍ୱର ଜିଲ୍ଲାର ଉତ୍ତରରେ ସୁବର୍ଣ୍ଣରେଖା ନଦୀ, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ବୈତରଣୀ ନଦୀ ଓ ପଶ୍ଚିମରେ ନୀଳଗିରି ପର୍ବତଶ୍ରେଣୀ ପ୍ରାକୃତିକସୀମାରୂପେ ଅବସ୍ଥିତ । ସୁବର୍ଣ୍ଣରେଖା, ପାଞ୍ଚପଡ଼ା, ବଳଙ୍ଗ, କାଂସବାଂସ ଓ ବୈତରଣୀ ଏହି ଜିଲ୍ଲାର ପ୍ରଧାନ ନଦୀ ।

ସୁବର୍ଣ୍ଣରେଖା ନଦୀ ଛୋଟନାଗପୁରର ରାଞ୍ଚି ପାହାଡ଼ରୁ ବାହାରି ବାଲେଶ୍ୱର ଜିଲ୍ଲାର ମଧ୍ୟଦେଇ ବଙ୍ଗୋପସାଗରରେ ପଡ଼ୁଅଛି । ଲକ୍ଷ୍ମଣନାଥ, ଜଲେଶ୍ୱର ଓ ବାଲିଆପାଳ ଏହି ନଦୀକୂଳସ୍ଥ ପ୍ରଧାନ ନଗର । କାଂସବାଂସ ନଦୀ ବାଲେଶ୍ୱର ଜିଲ୍ଲାର ଅମ୍ବୁଦିତା ଜଙ୍ଗଲରୁ ବାହାରି ଲାଇଚଣପୁର ବନ୍ଦରଠାରେ ସମୁଦ୍ରରେ ପଡ଼ିଅଛି । ଗମ୍ଭୀରୀ ଏହାର ଶାଖାନଦୀ ଅଟେ । ବଳଙ୍ଗ ମୟୂରଭଞ୍ଜର ଶିମୂଳିପାଳ ପର୍ବତରୁ ବାହାରି ମୟୂରଭଞ୍ଜ ଓ ବାଲେଶ୍ୱରଦେଇ ସମୁଦ୍ରରେ ପଡ଼ୁଅଛି । ଦେଓ, ସୋନ ଓ ଗଙ୍ଗାହାର ଏହାର ପ୍ରଧାନ ଉପନଦୀ । ବାରିପଦା ଓ ବାଲେଶ୍ୱର ଏହି ନଦୀକୂଳସ୍ଥ ପ୍ରଧାନ ନଗର । ପାଞ୍ଚପଡ଼ା ନଦୀ ବାଲେଶ୍ୱର ଜିଲ୍ଲାର ମଧ୍ୟଦେଇ ସାରଥା ବନ୍ଦରଠାରେ ସମୁଦ୍ରରେ ପଡ଼ିଅଛି । ବୈତରଣୀ କେନ୍ଦୁଝରର ଗୋନାସିକା ପର୍ବତରୁ ବାହାରି ଧାମରା ବନ୍ଦରଠାରେ ସମୁଦ୍ରରେ ପଡ଼ିଅଛି । ଖରସୁଆ, ବଣ୍ଡକା, ମୁସଲ, ସାଳନ୍ଦୀ ଓ ମଛେଇ ପ୍ରଧାନ ଉପନଦୀ । ଆନନ୍ଦପୁର, ଯାଜପୁର ଓ ଚାନ୍ଦବାଲି ବୈତରଣୀକୂଳସ୍ଥ ପ୍ରଧାନ ନଗର । ସାଳନ୍ଦୀ ମୟୂର-

ଉତ୍ତର ମେଘାସନ ପର୍ବତରୁ ବାହାରି ଧାମରାମୁହାଣର ନିକଟ ରୂପରେ ବୈତରଣୀ ସଙ୍ଗେ ମିଶିଅଛି । କାଉପୁର ଓ ଭଦ୍ରକ ସାଲନ୍ଦୀକୂଳରେ ଅବସ୍ଥିତ । ଏହି ନଦୀ ଶାଳବଣରୁ ଉତ୍ପନ୍ନ ହୋଇଥିବାରୁ ଏହାର ନାମ ସାଲନ୍ଦୀ ହୋଇଅଛି । ଏହାର ଜଳ ସ୍ୱଚ୍ଛ ।

୩ । ନଦୀର ଜୁଆର ଓ ଭଟ୍ଟା ।

ଯେତେବେଳେ ଚନ୍ଦ୍ରଙ୍କ ଆକର୍ଷଣରେ ସମୁଦ୍ର ଜଳ ପ୍ରବଳ ବେଗରେ କୂଳଆଡ଼କୁ ମାଡ଼ିଆସେ ସେତେବେଳେ ତାହାକୁ ଜୁଆର ଏବଂ ଯେତେବେଳେ ଛାଡ଼ିଯାଏ ସେତେବେଳେ ତାହାକୁ ଭଟ୍ଟା କହନ୍ତି । ଯେପରି ଚନ୍ଦ୍ର ଦିନର ଭିନ୍ନ ଭିନ୍ନ ସମୟରେ ଉଦିତ ହୁଅନ୍ତି, ସେହିପରି ଜୁଆର ଓ ଭଟ୍ଟା ମଧ୍ୟ ଭିନ୍ନ ଭିନ୍ନ ସମୟରେ ଘଟେ । ଜୁଆରପାଣି ନଦୀର ମୁହାଣବାଟେ ନଦୀ ମଧ୍ୟକୁ ପ୍ରବେଶକରେ । ଏହାଦ୍ୱାରା ନଦୀରେ ଜଳବୃଦ୍ଧି ହୁଏ ସତ୍ୟ କିନ୍ତୁ ଏହାର ସ୍ୱାଭାବିକ ସ୍ରୋତ ବନ୍ଦ ହୋଇ ବିପରୀତ ଦିଗରୁ ସ୍ରୋତ ଧାବିତ ହୁଏ ।

୪ । ସମୁଦ୍ରକୂଳର ଜୁଆର ଓ ଭଟ୍ଟା ।

ସମୁଦ୍ରକୂଳସ୍ଥ ବିସ୍ତୃତ ପଡ଼ାକୁ ଦଗଅସାର କହନ୍ତି । ଏହା ପ୍ରତ୍ୟେକ ଏକାଧିକବାର ଜୁଆରପାଣିରେ ବୁଡ଼ିଯାଏ ତେଣୁ ସେଠାରେ ଘାସ ପ୍ରଭୃତି ଜନ୍ମେ ନାହିଁ । ଜୁଆର ସମୟରେ ସମୁଦ୍ରରେ ଅଧିକ ଲହରୀ ହେବାର ଦେଖାଯାଏ । ଚନ୍ଦ୍ରୋଦୟ ସଙ୍ଗେ ସଙ୍ଗେ ସମୁଦ୍ରରେ ଜୁଆର ଆରମ୍ଭ ହୁଏ । ଯେତେବେଳେ ଚନ୍ଦ୍ର ଆକାଶର ଠିକ ମଧ୍ୟସ୍ଥଳକୁ ଯାନ୍ତି ସେତେବେଳେ ପୂର୍ଣ୍ଣଜୁଆର ହୁଏ । ଅମାବାସ୍ୟାଦିନ ସକାଳେ ଚନ୍ଦ୍ର ପୂର୍ବଦିଗରେ ଦେଖାଯାନ୍ତି ତେଣୁ ସେଦିନ ସକାଳେ ଜୁଆର ଆରମ୍ଭ ହୁଏ ।

୫ । ରିଲିଫ୍ ମ୍ୟାପ୍ ନିର୍ମାଣ ।

ଶିକ୍ଷକ ଓ ଛାତ୍ରମାନେ ନିଜ ନିଜ ହାତରେ କିଛି କିଛି ମାଟି ଓ ଖଣ୍ଡିଏ ଖଣ୍ଡିଏ ପେଷ୍ଟବୋର୍ଡ ଧରିବେ । ଶିକ୍ଷକ ପ୍ରଥମେ ଉତ୍କଳର

ପଠାର, ପାହାଡ଼, ଉଚ୍ଚଭୂମି, ନିମ୍ନଭୂମି, ସମତଳଭୂମି ଓ ନଦୀ ବିଷୟରେ ପ୍ରଶ୍ନ ପତ୍ରର ତହିଁର ଆଦର୍ଶ କୌଣସି ନିର୍ଦ୍ଦିଷ୍ଟ ସ୍କେଲ ଅନୁସାରେ ରଙ୍ଗ ପେଷ୍ଟ୍ ବୋର୍ଡ଼ରେ ପ୍ରସ୍ତୁତ କରିବେ । ଛାତ୍ରମାନେ ମଧ୍ୟ ନିଜ ନିଜ ପେଷ୍ଟ୍ ବୋର୍ଡ଼ରେ ସେହିପରି କରି ଶିକ୍ଷକ ମହାଶୟଙ୍କଠାରୁ ସଂଶୋଧନ କରାଇ ନେବେ ।

୨ । ବୃଷ୍ଟି ।

ବାଲେଶ୍ୱର ଜିଲ୍ଲାରେ ଜୁଲାଇରୁ ଅକ୍ଟୋବର ପର୍ଯ୍ୟନ୍ତ ପ୍ରଚୁର ବୃଷ୍ଟି ହୁଏ । ତେଣୁ ଏହା ବର୍ଷାକାଳ । ଏହି ସମୟରେ ପ୍ରାୟ ୬୦ ଇଞ୍ଚ ବୃଷ୍ଟି ହୁଏ । ଶୀତଦିନରେ ବର୍ଷା ପ୍ରାୟ ହୁଏ ନାହିଁ । ଗ୍ରୀଷ୍ମଦିନରେ ସକାଳେ ବୃଷ୍ଟି ହୁଏ ନାହିଁ । ଉପରନ୍ତୁ ଝଡ଼ ସଙ୍ଗେ ସଙ୍ଗେ ବର୍ଷା ହୁଏ ଏବଂ କୁଆପଥର ପଡ଼େ । ଭୂମି ଅଧିକାଂଶ ବୃଷ୍ଟିଜଳକୁ ଶୋଷିନିଏ, କେତେକାଂଶ ବାଷ୍ପ ହୋଇ ଉଡ଼ିଯାଏ ଏବଂ କେତେକ ନାଳ ଓ ନଦୀବାଟେ ସମୁଦ୍ରରେ ପଡ଼େ । ମୃତ୍ତିକାର ଗଠନ ( ଚିକିଟା, ବାଲିଆ, ମଟାଳ, ଶକ୍ତ ଓ କୋମଳ ), ଭୂମିର ଅବନତି ଓ ଜଳ ବହିର୍ଗମନର ଅଭାବ ଏହି ଭିନ୍ନଭିନ୍ନ ବିଷୟ ଉପରେ ଜଳଶୋଷଣ କାର୍ଯ୍ୟ ନିର୍ଭର କରେ । ଏହି ଜିଲ୍ଲାର ସମୁଦ୍ରକୂଳବର୍ତ୍ତୀ ସ୍ଥାନମାନଙ୍କରେ ପ୍ରଚୁର ଜଳ ଜମା ହୋଇ ରହେ । ସୁବର୍ଣ୍ଣରେଖା, କାଁସବାଁସ; ବଳଙ୍ଗ ଓ ବୈତରଣୀ ନଦୀ ପ୍ରବାହିତ ସ୍ଥାନମାନଙ୍କରେ ବନ୍ୟା ହୁଏ ।

୩ । ଋତୁ ଓ ଜଳବାୟୁ ।

ଏହି ଜିଲ୍ଲାରେ ଜୁନ୍‌ଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ବର୍ଷାକାଳ । ଏହି ସମୟରେ ପବନ ସାଧାରଣତଃ ଉତ୍ତରଦିଗରୁ ଏବଂ ସମୟେ ସମୟେ ପୂର୍ବଦିଗରୁ ମଧ୍ୟ ବହେ । ତହିଁରେ ଜଳୀୟବାଷ୍ପ ଥାଏ । ଏହି [illegible] ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁଦ୍ୱାରା ଅଧିକ ବୃଷ୍ଟି ହୁଏ । ନଭେମ୍ବରରୁ ଫେବୃୟାରୀ ପର୍ଯ୍ୟନ୍ତ ଶୀତକାଳ । ଏହି ସମୟରେ

ପବନ ପ୍ରାୟ ଉତ୍ତରଦିଗରୁ ବହେ । ବାୟୁ ଶୀତଳ କିନ୍ତୁ ଜଳୀୟ ବାଷ୍ପ ଶୂନ୍ୟ । ମାର୍ଚ୍ଚରୁ ମେ ମାସ ପର୍ଯ୍ୟନ୍ତ ଗ୍ରୀଷ୍ମକାଳ । ଏହି ସମୟରେ ଦକ୍ଷିଣ ଓ ଦକ୍ଷିଣ ପଶ୍ଚିମ ଦିଗରୁ ବାୟୁ ବହେ । ଦକ୍ଷିଣପଶ୍ଚିମ ଦିଗରୁ ଯେଉଁ ବାୟୁ ବହେ ତାହାକୁ ମୌସୁମୀ ବାୟୁ କହନ୍ତି । ଏହା ସମୁଦ୍ର-ଆଡ଼ୁ ପ୍ରବାହିତ ହେଉଥିବାରୁ ଏଥିରେ ଅଧିକ ଜଳୀୟବାଷ୍ପ ଥାଏ । ଗ୍ରୀଷ୍ମ ଆରମ୍ଭରେ ଏଥିରେ ଅଦୌ ଜଳୀୟବାଷ୍ପ ନ ଥାଏ । ତେଣୁ ଏହା ଅତ୍ୟନ୍ତ ଗରମ ବୋଧ ହୁଏ । ସମୁଦ୍ରକୂଳବର୍ତ୍ତୀ ସ୍ଥାନମାନଙ୍କରେ ମଧ୍ୟାହ୍ନ ଓ ଅପରାହ୍ନରେ ସମୁଦ୍ରଆଡ଼ୁ ବାୟୁ ବହେ କିନ୍ତୁ ପୂର୍ବାହ୍ନରେ କେବେହେଁ ବହେ ନାହିଁ ।

## ୮ । ନକ୍ସା ଅଙ୍କନ ।

ଶିକ୍ଷକ ବାଲେଶ୍ୱର ଜିଲ୍ଲାର ମ୍ୟାପକୁ ଆଦର୍ଶସ୍ୱରୂପ ରଖି ବ୍ଲାକ ବୋର୍ଡରେ ଉତ୍ତର ଓ ଦକ୍ଷିଣ ସୀମାସୂଚକ ଦୁଇଟି ସମାନ୍ତର ସରଳରେଖା ଦୁଇଗୁଣ ଅନ୍ତରରେ ଅଙ୍କନ କରିବେ । ସେହିପରି ପୂର୍ବ ପଶ୍ଚିମ ସୀମାସୂଚକ ଦୁଇଗୋଟି ଲମ୍ବ ରେଖା ଦୁଇଗୁଣ ଅନ୍ତରରେ ଅଙ୍କନ କରିବେ । ଉତ୍ତରରୁ ଆରମ୍ଭକରି କେତେକ ସ୍ଥାନର ବିସ୍ତାର ମାପି ବକ୍ରରେଖାମାନଙ୍କ ଦ୍ୱାରା ପୂର୍ବ ଉପକୂଳ ଓ ପଶ୍ଚିମ ସୀମା ଦେଖାଇ ଦେବେ । ବାଳକମାନେ ବ୍ଲାକବୋର୍ଡ଼ ନକ୍ସା ପରି ନିଜ ନିଜ ଖାତାରେ ମଧ୍ୟ ନକ୍ସାଙ୍କନ କରିବେ । ତହିଁରେ ସୁବର୍ଣ୍ଣରେଖା, ବଳଙ୍ଗ ଓ ସାଳନ୍ଦୀ ପ୍ରଭୃତି ନଦୀ, ନୀଳଗିରି ପର୍ବତମାନଙ୍କର ଅବସ୍ଥିତି ଓ ପ୍ରଧାନପ୍ରଧାନ ନଗରମାନ ନିର୍ଦ୍ଦେଶ କରିବେ ଏବଂ ଭୁଲ ଥିଲେ ଶିକ୍ଷକଙ୍କ ଦ୍ୱାରା ସଂଶୋଧନ କରାଇନେବେ ।

## ୯ । ଉତ୍ପନ୍ନଦ୍ରବ୍ୟ ଓ ଜୀବଜନ୍ତୁ ।

ଉଚ୍ଚଜମିରେ ଆଶୁ ଓ ଲଘୁଧାନ ଏବଂ ଖାଲ ଜମିରେ ବଡ଼ଧାନ ଉତ୍ପନ୍ନ ହୁଏ । ବନ୍ୟାଜଳଦ୍ୱାରା ପଟୁ ପଡ଼ିଥିବା ଜମିରେ ପରିବା, ରବିଫସଲ ଓ ତୈଳବୀଜ ପ୍ରଚୁର ପରିମାଣରେ ଜନ୍ମେ । ପାନ

ନଡ଼ିଆ, ଲଙ୍କାଅମୃତଙ୍କି ଓ ସଉପମଣିଣା ଭୋଗସ୍ଥଇ ଅଞ୍ଚଳର ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ । ଉପକୂଳ ପ୍ରଦେଶରେ ଗୋଚାରଣ ଭୂମି ପ୍ରଚୁର ଥିବାରୁ ଗୋରୁ ମଇଁଷଙ୍କ ସଂଖ୍ୟା ଅଧିକ । ଉପକୂଳବର୍ତ୍ତୀ ଅରଣ୍ୟରେ ହରିଣ, ଚିତାବାଘ ଓ ଶୂକର ଦେଖାଯାନ୍ତି । ଅନେକ ସ୍ଥାନରେ ବୃହଦାକାର ସର୍ପ ଏବଂ ଉପକୂଳ ପ୍ରଦେଶରେ ବିଷାକ୍ତ ସର୍ପ ଦେଖାଯାନ୍ତି । ଏହି ଜିଲ୍ଲାରେ ଭେକ୍ଟି, ଇଲିଶି, କଣ୍ଟିଆ, ବାହାଲି ପିଙ୍ଗଳ, ବୁଢ଼ାଚିଙ୍ଗୁଡ଼ି ଓ ସମୁଦ୍ର କଙ୍କଡ଼ା ପ୍ରଭୃତି ମିଳେ ।

### ୧୦ । ସ୍ଥଳପଥ ଓ ଜଳପଥ ।

ବେଙ୍ଗଲ ନାଗପୁର ରେଲଓ୍ୱେର ଯେଉଁ ଅଂଶ ଏହି ଜିଲ୍ଲା ମଧ୍ୟରେ ଅବସ୍ଥିତ ତାହାର ବିସ୍ତାର ୮୮ ମାଇଲ । ଷ୍ଟେଶନର ନାମ ଲକ୍ଷ୍ମଣନାଥ-ରୋଡ଼, ଜଳେଶ୍ୱର, ଆମର୍ଦ୍ଦା ରୋଡ଼, ବସ୍ତା, ରୂପସା, ହଳଦୀପଦା, ବାଲେଶ୍ୱର, ଖନ୍ତାପଡ଼ା, ବାହାନଗା ବଜାର, ସୋରୋ, ମାର୍କୋଣା, ଭଦ୍ରଖ, କେନ୍ଦୁଆପଦା ଓ ବୈତରଣୀରୋଡ଼ । ରୂପସାଠାରୁ ମୟୂରଭଞ୍ଜ ଷ୍ଟେଟ ରେଲଓ୍ୱେ ନାମକ ଏକ ଶାଖାରେଲ ଯାଇଅଛି ।

ଜଗନ୍ନାଥ ଟ୍ରଙ୍କରୋଡ଼ ବା ଜଗନ୍ନାଥ ସଡ଼କ ଏହି ଜିଲ୍ଲାର ପ୍ରଧାନ ପକ୍କାରାସ୍ତା ଅଟେ । ଏହାର ବିସ୍ତାର ୯୫ ମାଇଲ । ଜଳେଶ୍ୱର, ସୋରୋ, ବାଲେଶ୍ୱର ଓ ଭଦ୍ରଖ ଏହି ସଡ଼କ ପାର୍ଶ୍ୱସ୍ଥ ପ୍ରଧାନ ସ୍ଥାନ । ଭଦ୍ରଖରୁ ରୁକୁଣାଦେଈପୁର ଓ ଭଦ୍ରଖରୁ ଉହଡ଼ ହାଟ ସଡ଼କ ହୋଇ ଚାନ୍ଦବାଲି ବନ୍ଦରକୁ ଯିବାର ପ୍ରଧାନ ରାସ୍ତା । ଏହା ଜଗନ୍ନାଥ ସଡ଼କପରି ପକ୍କା ସଡ଼କ ନୁହେ । ଅନ୍ୟାନ୍ୟ ସଡ଼କ ମଧ୍ୟରେ କମର୍ଦ୍ଦା ବାଲିଆପାଳ ସଡ଼କ, ବାଲିଆପାଳରୁ ବସ୍ତା ସଡ଼କ, କମର୍ଦ୍ଦାରୁ ଜଳେଶ୍ୱର ସଡ଼କ, ଭଦ୍ରଖରୁ ବାସୁଦେବପୁର ସଡ଼କ, ଭଦ୍ରଖରୁ କେନ୍ଦୁଝର ସଡ଼କ, ଭଦ୍ରଖରୁ ଧାମନଗର ଓ ରାଜପୁର ସଡ଼କ, ବାଲେଶ୍ୱରରୁ ମିଜପୁର ସଡ଼କ, ବାଲେଶ୍ୱରରୁ ନୀଳଗିରି ସଡ଼କ ଓ ବାଲେଶ୍ୱରରୁ ଗୁନ୍ଦପୁର ସଡ଼କ ପ୍ରଧାନ । ଶେଷୋକ୍ତ ସଡ଼କ ଏକ ପକ୍କା ସଡ଼କ ଅଟେ ।

ଗୃଉବା'ଟିଥିବୁ ନଳକୂଳ ପର୍ଯ୍ୟନ୍ତ ବିସ୍ତୃତ କେନାଲକୁ କୋଷ୍ଟ-କେନାଲ, ନଳକୂଳର ଉତ୍ତରରୁ ବିସ୍ତୃତ କେନାଲକୁ ହିଜିଲ କେନାଲ ଓ ଭଦ୍ରଖରୁ ଯାଜପୁର ପର୍ଯ୍ୟନ୍ତ ବିସ୍ତୃତ କେନାଲକୁ ହାଇଲେଭଲ କେନାଲ କହନ୍ତି । ବୈତରଣୀ, ମଟେଇ ଓ ବଳଙ୍ଗ ନଦୀର କେତେକାଂଶରେ ନୌକା ଯିବାଆସିବା କରେ ।

ଜାହାଜ ଗମନାଗମନର ସୁବିଧାଜନକ ସ୍ଥାନକୁ ବନ୍ଦର କହନ୍ତି । ପୂର୍ବେ ବାଲେଶ୍ୱର ଓ ପିପିଲିଠାରେ ଜାହାଜ ରହୁଥିଲା । ବର୍ତ୍ତମାନ ଚାନ୍ଦବାଲିଠାରେ ସମୟେ ସମୟେ ଜାହାଜ ଲାଗେ ।

## ୧୧ । ସବ୍‌ଡିଭିଜନ ଓ ସଦର ।

ବାଲେଶ୍ୱର ଜିଲ୍ଲାର ପୂର୍ବ ସୀମା ପ୍ରାକୃତିକ ଓ ଅନ୍ୟ ତିନି ସୀମା ରାଜକୀୟ । ଏହାର ଲୋକସଂଖ୍ୟା ପ୍ରାୟ ୯୮୦୫୦୪ ଓ ଗ୍ରାମ ସଂଖ୍ୟା [illegible]୪ ୫ ଅଟେ । ଏହା ବାଲେଶ୍ୱର ଓ ଭଦ୍ରଖ ଏହି ଦୁଇ ସବ୍‌ଡିଭିଜନରେ ବିଭକ୍ତ । ବାଲେଶ୍ୱର ସବ୍‌ଡିଭିଜନରେ ଜଲେଶ୍ୱର, ବାଲିଆପାଳ, ବସ୍ତା, ବାଲେଶ୍ୱର ଓ ସୋର ଏହି ୫ ଗୋଟି ଥାନା ଏବଂ ରେମୁଣା, ପାଞ୍ଚପଲ୍ଲୀ, ରାଜଘାଟ, ସିଙ୍ଗଲ, ଭୋଗରାଇ, ନାଙ୍ଗୋ, ସିମୁଳିଆ, ଖଇରା ଓ ଅନନ୍ତପୁର ଏହି ୯ ଗୋଟି ଆଉଟପୋଷ୍ଟ ବା ଫାଣ୍ଡି ଅଛି । ଭଦ୍ରଖ ସବ୍‌ଡିଭିଜନର ପୂର୍ବ ଓ ଦକ୍ଷିଣ ସୀମା ପ୍ରାକୃତିକ ଓ ଅନ୍ୟ ଦୁଇ ସୀମା ରାଜକୀୟ । ଭଦ୍ରଖ ସବ୍‌ଡିଭିଜନରେ ଭଦ୍ରଖ, ବାସୁଦେବପୁର, ଚାନ୍ଦବାଲି ଓ ଧାମନଗର ଏହି ୪ ଗୋଟି ଥାନା ଏବଂ ବନ୍ତ ଓ ଆଖୁଆପଦା ଏହି ଦୁଇ ଗୋଟି ଫାଣ୍ଡି ଅଛି । ବାଲେଶ୍ୱର କଂସାବାସନ ଓ ଲୁଗା ନିମନ୍ତେ ପ୍ରସିଦ୍ଧ । ଏଠାରେ ସରକାରଙ୍କର କଚେରି, ଜିଲ୍ଲାସ୍କୁଲ, ଡାକ୍ତରଖାନା ଓ ବେଣେଶ୍ୱର ମହାଦେବଙ୍କର ମନ୍ଦିର ଅଛି । ଲକ୍ଷ୍ମଣନାଥରେ ଗୋଟିଏ ହାଇସ୍କୁଲ ଅଛି । ରାଇବଣିଆରେ

ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଅଛି । ଭୂପାରରେ ବୌଦ୍ଧକୀର୍ତ୍ତି ଅଛି । ଗୁଡ଼୍‌ଗ୍ରାମରେ ବଳଦେବଙ୍କ ମନ୍ଦିର ଓ ରେମୁଣାରେ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ଅଛି । ଭଦ୍ରକରେ ଭଦ୍ରକାଳୀଙ୍କ ମନ୍ଦିର, ସରକାରଙ୍କର କଚେରି, ହାଇସ୍କୁଲ ଓ ଡାକ୍ତରଖାନା ଏବଂ ଅନେକ ମୁସଲମାନ ବସ୍ତି ଅଛି । ମଙ୍ଗଳପୁରରେ ମୁଗୁନି ପଥରର ବାସନ ମିଳେ । ବାଲେଶ୍ୱର, ଚାନ୍ଦବାଲି, ଧାମରା ଓ ଯେପିଲି ପ୍ରଧାନ ବନ୍ଦର । ମୋଢଗଞ୍ଜ, ସୁନହଟ, ଧାମନଗର, ଚେଠାର, ଓ କାଇପୁର ଜମିଦାରସ୍ଥଳୀ । ଦେହୁକା, ସଙ୍ଗଲା, ରେମୁଣା, ଭୁରଗଡ଼ିଆ, ବଦ୍ରଖ, ସୋର ଓ ଦୁବଳେ ପ୍ରଧାନ ହାଟ । ପନ୍ଦିଅରେ ବୈଷ୍ଣବମାନଙ୍କର ଗୋଟିଏ ଦେବମନ୍ଦିର ଅଛି ।

## ୯ । ଭାଷା ଓ ବ୍ୟବସାୟ ।

ଓଡ଼ିଆ ଏହି ଜିଲ୍ଲାର ପ୍ରଧାନ ଭାଷା । ଉତ୍ତରବାଲେଶ୍ୱରରେ ଲୋକେ ବଙ୍ଗଳାମିଶା ଓଡ଼ିଆ ଭାଷା କହନ୍ତି । ମୁସଲମାନମାନେ ଉର୍ଦ୍ଦୁ ଓ ମାରୁଆଡ଼ିମାନେ ହିନ୍ଦୀ ଭାଷାରେ କଥା କହନ୍ତି । ବଙ୍ଗାଳି ଓ ମୁସଲମାନମାନେ ଘରେ ବଙ୍ଗଳା ଓ ଉର୍ଦ୍ଦୁ ଭାଷାରେ ଏବଂ ବାହାରେ ଓଡ଼ିଆ ଭାଷାରେ କଥା କହନ୍ତି । ଶିକ୍ଷିତ ବଙ୍ଗାଳି ଓ ମୁସଲମାନମାନେ ଓଡ଼ିଆ ଲେଖି ପଢ଼ି ପାରନ୍ତି । କୃଷି ଲୋକମାନଙ୍କର ପ୍ରଧାନ ବ୍ୟବସାୟ । ଧାନ, ଚାଉଳ, ନଡ଼ିଆ, ଲୁଣ, ସପମେଣ୍ଡା, କଂସା ଓ ପଥରବାସନ ପ୍ରଧାନ ପଣ୍ୟଦ୍ରବ୍ୟ । କେତେକ ଲୋକ ଅନ୍ୟ ଲୋକର ମୂଲ ଲାଗି ଚଳନ୍ତି । ତେଲି, ତନ୍ତି, କେଉଟ, ଗୋଖା, ରାଢ଼ି, କମାର, କୁମ୍ଭାର, ବଣିଆ, ଗୁଡ଼ିଆ, ଧୋବା; ଭଣ୍ଡାରି ଓ ବଢ଼େଇ ନିଜ ନିଜର ପେଶା ବା ବେଉସା କରି ଚଳନ୍ତି । ତାମ୍ବୁଲୀ ସୁବର୍ଣ୍ଣବଣିକ, ଗନ୍ଧବଣିକ, ଅଗ୍ରୁଆ, ମାରୁଆଡ଼ି ଓ କାବୁଲିମାନେ ବାଣିଜ୍ୟ ବ୍ୟବସାୟରେ ଚଳନ୍ତି । ପାଣ, ଦଣ୍ଡରା ପ୍ରଭୃତି ଶ୍ରେଣୀର

ଲୋକେ ଗୋରୁ, ମଇଁଷ ଚରାଇ ଚଳନ୍ତି । ବେଲାମାନେ ଶିକାର କରି ଓ ଭିକ୍ଷା ମାଗି ଚଳନ୍ତି ।

### ୧୩ । ଜାତି ଓ ଅଧିବାସୀ ।

ଏହି ଜିଲ୍ଲାରେ ଖଣ୍ଡାୟତ, ବ୍ରାହ୍ମଣ, ଗଉଡ଼, ପାଣ, ଚନ୍ତି, ତେଲି, ଗଜୁ, କଣ୍ଡରା ଓ ଗୋଖା ଜାତିର ଲୋକ ଅଛନ୍ତି । କରଣଙ୍କ ସଂଖ୍ୟା ଯଦିଓ ଅଳ୍ପ ହେଲେ ମଧ୍ୟ ସେମାନେ ଶିକ୍ଷିତ । ଏହି ଜିଲ୍ଲାରେ ପ୍ରାୟ ୧ ଲକ୍ଷ ୯୪ ହଜାର ଖଣ୍ଡାୟତ, ୧ ଲକ୍ଷ ୭ ହଜାର ବ୍ରାହ୍ମଣ, ୭୭ ହଜାର ଗଉଡ଼, ୫୫ ହଜାର ପାଣ, ୪୫ ହଜାର ଲେଖାଏଁ ଗଜୁ, ଚନ୍ତି ଓ ତେଲି, ୨୫ ହଜାର ଲେଖାଏଁ ଗୋଲା, କଣ୍ଡରା ଓ ଗୋଖା ଏବଂ ୨୨ ହଜାର କରଣ ଅଛନ୍ତି । ହିନ୍ଦୁ (ଓଡ଼ିଆ, ବଙ୍ଗାଳୀ), ମୁସଲମାନ ଖ୍ରୀଷ୍ଟିୟାନ, ତେଲଙ୍ଗା ଓ ଅନାର୍ଯ୍ୟ (ସାନ୍ତାଳ, ଭୂମିଜ) ଏହି ଜିଲ୍ଲାର ଅଧିବାସୀ ଅଟନ୍ତି । ହିନ୍ଦୁ ଓ ମୁସଲମାନମାନଙ୍କ ସଂଖ୍ୟା ଯଥାକ୍ରମେ ଶତକରା ୯୭ ଓ ୩ ଜଣ ଏବଂ ଖ୍ରୀଷ୍ଟିୟାନ ଓ ଅନାର୍ଯ୍ୟମାନଙ୍କ ସଂଖ୍ୟା ପ୍ରାୟ ୧୨୦୦ ଓ ୮୦୦୦ ଅଟେ ।

### ୧୪ । ଶାସନପ୍ରଣାଳୀ ।

ଏହି ଜିଲ୍ଲା ଜଣେ ମ୍ୟାଜିଷ୍ଟ୍ରେଟ ଓ କଲେକ୍ଟରଙ୍କଦ୍ୱାରା ଶାସିତ ହୁଏ । ପ୍ରତି ସବ୍‌ଡିଭିଜନ ଜଣେ ଜଣେ ସବ୍‌ଡିଭିଜନାଲ ଅଫିସରଙ୍କଦ୍ୱାରା ଶାସିତ ହୁଏ । ସେମାନଙ୍କ ଅଧୀନରେ କେତେଜଣ ଡେପୁଟି ଓ ସବ୍‌ଡେପୁଟି ମାଜିଷ୍ଟ୍ରେଟ ଅଛନ୍ତି । ଗ୍ରାମର ଶାସନଭାର ପୁଲିସ ସବ୍‌ଇନ୍‌ସପେକ୍ଟରଙ୍କ ଉପରେ ନ୍ୟସ୍ତ ଅଛି । ତାହାଙ୍କ ଅଧୀନରେ କନଷ୍ଟେବଲ, ଦଫାଦାର ଓ ଚୌକିଦାରମାନେ ଅଛନ୍ତି । ଗ୍ରାମ୍ୟପଞ୍ଚାୟତ ମଧ୍ୟ ଶାସନ କାର୍ଯ୍ୟରେ ସାହାଯ୍ୟ କରନ୍ତି ।

### ୧୫ । ଆଦର୍ଶ ପ୍ରଶ୍ନାବଳୀ ।

୧ । ବାଲେଶ୍ୱର ଜିଲ୍ଲାର ଚତୁଃସୀମା କହ ।

୨ । ଜୁଆର, ଭଟ୍ଟା, ବନ୍ଦର ଓ ମୌସୁମୀବାୟୁ କାହାକୁ କହନ୍ତି ?

୩ । ଏହି ଜିଲ୍ଲାର ଜଳବାୟୁ କପରି ?

୪ । ଲୋକମାନେ କପରି ଜୀବିକା ନିର୍ବାହ କରନ୍ତି ?

୫ । ଏଠାରେ କି କି ଜାତିର ଲୋକ ଅଛନ୍ତି ?

---

## ଓଡ଼ିଶା ବିଭାଗ ।

### ୧ । ଓଡ଼ିଶାର ଭୂପୃଷ୍ଠ ।

ଓଡ଼ିଶାର ଉତ୍ତରରେ ମେଦିନୀପୁର ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ବଙ୍ଗୋପସାଗର ଓ ଗଞ୍ଜାମ ଜିଲ୍ଲା ଏବଂ ପଶ୍ଚିମରେ ମଧ୍ୟପ୍ରଦେଶ । ଏହାର ଆକାର ପ୍ରାୟ ବର୍ଗକ୍ଷେତ୍ରପରି । କ୍ଷେତ୍ରଫଳ ୪୧୮୬୮ ବର୍ଗମାଇଲ । ଏହା ପଶ୍ଚିମରୁ ପୂର୍ବ-ଆଡ଼କୁ କ୍ରମ ନିମ୍ନ ବା ଢାଲୁ । ମୟୂରଭଞ୍ଜରେ ମେଘାସନ; କେନ୍ଦୁଝରରେ ଗନ୍ଧମାଦନ, ଢେଙ୍କାନାଳରେ କପିଳାସ ଓ ପାଲ-ଲହଡ଼ାରେ ମାଲ୍ୟଗିରି ପର୍ବତ ଅବସ୍ଥିତ । ଏମାନେ ଓଡ଼ିଶାର ଉଚ୍ଚ ପର୍ବତ । ମୋଗଲବନ୍ଦିରେ ଖଣ୍ଡଗିରି, ଉଦୟଗିରି, ଧଉଳୀଗିରି, ବରୁଣାଇ, ମହାବିନାୟକ, ଲଳିତଗିରି ଓ ଅଳମଗିରି ପ୍ରଭୃତି କେତେକ କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ଅଛି ।

### ୨ । ନଦୀ ।

ମହାନଦୀ——ଏହା ମଧ୍ୟପ୍ରଦେଶସ୍ଥ ରାୟପୁର ଜିଲ୍ଲାରୁ ବାହାରି ସମ୍ବଲପୁର ସୋନପୁର, ବୌଦ୍ଧ, ଅଠମଲ୍ଲିକ, ଦଶପଲ୍ଲା, ନରସିଂହ-ପୁର, ବଡ଼ମ୍ବା, ଟିଗିରିଆ, ଓ ଖଣ୍ଡପଡ଼ା ବାଟେ କଟକ ଜିଲ୍ଲାରେ ପ୍ରବେଶ କରି ବହୁଧାରାରେ ବଙ୍ଗୋପସାଗରରେ ପଡ଼ିଅଛି । କାଠଯୋଡ଼ି, ବିରୂପା, ଲୁଣୀ, ପାଇକା ଏହାର ପ୍ରଧାନ ଶାଖାନଦୀ

ଓ ତେଲ, କମାଇ, ଉଙ୍ଗ, ମେହରଣୀ, ସାଲୁଙ୍କୀ, ଓ ବାଘନଦୀ ପ୍ରଧାନ ଉପନଦୀ ଅଟେ । ସମ୍ବଲପୁର, ବୌଦ, କଣ୍ଟିଲୋ, ପଦ୍ମାବତୀ, ବୈଦ୍ୟେଶ୍ୱର, ଚଉଦ୍ୱାର ଓ କଟକ ଏହି କୂଳସ୍ଥ ପ୍ରଧାନ ନଗର । ଏହା କଟକଠାରୁ ସମ୍ବଲପୁର ପର୍ଯ୍ୟନ୍ତ ନୌବାହ୍ୟ ।

ବ୍ରାହ୍ମଣୀ—ଏହା ଛୋଟନାଗପୁରସ୍ଥ ଲୋହାରଡଗାରୁ ବାହାରି ବଣେଇ, ବାମଣ୍ଡା, ତାଳଚେର, ଢେଙ୍କାନାଳ ଓ କଟକଜିଲ୍ଲାର ମଧ୍ୟ ଦେଇ ଧାମରା ମୁହାଣଠାରେ ବଙ୍ଗୋପସାଗରରେ ପଡ଼ିଅଛି । ଏହି ନଦୀରେ ତାଳଚେର ପର୍ଯ୍ୟନ୍ତ ନୌକା ଯିବାଆସିବା କରେ । ଲିଙ୍ଗରା ଏହାର ପ୍ରଧାନ ଉପନଦୀ ଓ ପାଟୁଆ, ଖରସୁଆ, ପ୍ରଧାନ ଶାଖାନଦୀ ଅଟେ । ତାଳଚେର, ଜେନାପୁର, ଧର୍ମଶାଳା, ପଟାମୁଣ୍ଡାଇ ଏହି ନଦୀକୂଳସ୍ଥ ପ୍ରଧାନ ନଗର ।

ବୈତରଣୀ—ଏହା କେନ୍ଦୁଝରର ଗୋନାସିକା ପର୍ବତରୁ ବାହାରି ମୟୂରଭଞ୍ଜ, କେନ୍ଦୁଝର ଦେଇ କଟକ ଓ ବାଲେଶ୍ୱର ଜିଲାର ସୀମା ସ୍ପର୍ଶକରି ଚାନ୍ଦବାଲି ନିକଟରେ ବ୍ରାହ୍ମଣୀ ସଙ୍ଗେ ମିଶି ଧାମରା ବନ୍ଦରଠାରେ ବଙ୍ଗୋପସାଗରରେ ପଡ଼ିଅଛି । ଖଇରା, ଭଣ୍ଡାରୀ, ମୂଷଳ, ସାଳନ୍ଦୀ ଓ ମତେଇ ପ୍ରଧାନ ଉପନଦୀ ଅଟେ । ସାଳନ୍ଦୀ ମୟୂରଭଞ୍ଜର ମେଘାସନ ପର୍ବତରୁ ବାହାରି ଭଦ୍ରକ ବାଟେ ପ୍ରବାହିତ ହୋଇ ବୈତରଣୀ ସଙ୍ଗେ ମିଶିଅଛି । ଏହା ଶାଲବଣରୁ ଉତ୍ପନ୍ନ ବୋଲି ଏହାର ନାମ ସାଲନ୍ଦୀ ହୋଇଅଛି । ଏହାର ଜଳ ସ୍ୱଚ୍ଛ, ବାସୁଦେବପୁର ଓ ଭଦ୍ରକ ଏହା କୂଳରେ ଅବସ୍ଥିତ । ଆନନ୍ଦପୁର ଯାଜପୁର ଓ ଚାନ୍ଦବାଲି ବୈତରଣୀ କୂଳସ୍ଥ ପ୍ରଧାନ ନଗର ।

କାଁସବାଁସ—ଏହା ବାଲେଶ୍ୱର ଜିଲ୍ଲାସ୍ଥ ଆମ୍ବହତା ବଣରୁ ବାହାରି ଲଇଛଣପୁର ବନ୍ଦରଠାରେ ବଙ୍ଗୋପସାଗରରେ ପଡ଼ିଅଛି । ଖମେଇ ଏହାର ପ୍ରଧାନ ଶାଖାନଦୀ ଅଟେ ।

ବଳଙ୍ଗ—ଏହା ମୟୂରଭଞ୍ଜର ଶିମ୍ଳୀପାଳ ପର୍ବତରୁ ବାହାରି ବାଲେଶ୍ୱର ଜିଲ୍ଲାର ମଧ୍ୟଦେଇ ବଙ୍ଗୋପସାଗରରେ ପଡ଼ିଅଛି ।

ଟପଟ, ଶୋନ, ଗଙ୍ଗାହାର ଏହାର ପ୍ରଧାନ ଉପନଦୀ । ବାରିପଦା ଓ ବାଲେଶ୍ୱର ଏହା କୂଳସ୍ଥ ପ୍ରଧାନ ନଗର ।

ସୁବର୍ଣ୍ଣରେଖା—ଏହା ଛୋଟନାଗପୁରର ରାଞ୍ଚିରୁ ବାହାର ବାଲେଶ୍ୱର ଜିଲ୍ଲାର ମଧ୍ୟଦେଇ ବଙ୍ଗୋପସାଗରରେ ପଡ଼ିଅଛି । ଲକ୍ଷ୍ମଣନାଥ, ଜଲେଶ୍ୱର, ଓ ବାଲିଆପାଳ ଏହା କୂଳସ୍ଥ ପ୍ରଧାନ ନଗର ।

୩ । ରିଲିଫ୍ ମ୍ୟାପ ନିର୍ମାଣ ।

ଶିକ୍ଷକ ପ୍ରତ୍ୟେକ ଛାତ୍ରକୁ ଖଣ୍ଡିଏ ଲେଖାଏଁ ପେଷ୍ଟ ବୋର୍ଡ଼ ଓ କିଛି ମାଟି ଦେବେ ଏବଂ ଆଦର୍ଶ ଶିକ୍ଷା ନିମନ୍ତେ ନିଜେ ମଧ୍ୟ ସେହିପରି ନେବେ । ଛାତ୍ରମାନେ ସ୍ୱହସ୍ତରେ ପର୍ବତ, ଉଚ୍ଚଭୂମି ନିମ୍ନଭୂମି, ସମତଳ ଭୂମି ନିର୍ମାଣ କରିବେ, ଏବଂ ଶିକ୍ଷକ ସେହି ସମୟ ମଧ୍ୟରେ ଭୁଲ ଭୁଲ ଭ୍ରମ ସଂଶୋଧନ କରୁଥିବେ । ଶେଷରେ ବାଳକମାନେ ନିଜ ନିଜର ମ୍ୟାପକୁ ପରସ୍ପର ମଧ୍ୟରେ ସଂଶୋଧନ କରିନେବେ ।

୪ । ବୃଷ୍ଟି ।

ଜୁନମାସରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ବେଶି ବର୍ଷା ହୁଏ । ହାରାହାରି ବୃଷ୍ଟି ପରିମାଣ ପ୍ରାୟ ୫୮ ଇଞ୍ଚ । ବାଲେଶ୍ୱର ଓ କଟକରେ କିଛି ବେଶୀ ଏବଂ ପୁରୀ, ଅନୁଗୁଳ ଓ ସମ୍ବଲପୁରରେ କିଛି କମ୍ ବୃଷ୍ଟି ହୁଏ । ପଲହଡ଼ା ବଣ୍ଡ ବଉଘରଠାରେ ପ୍ରାୟ ୭୦ ଇଞ୍ଚ ବୃଷ୍ଟିପାତ ହୁଏ । ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଏତେ ଅଧିକ ବୃଷ୍ଟି ହୁଏ ନାହିଁ । ଏହାର ଉତ୍ତରପୂର୍ବ ଭାଗରେ ଅଧିକ ଓ ଦକ୍ଷିଣ ପଶ୍ଚିମ ଭାଗରେ ଅଳ୍ପ ବୃଷ୍ଟି ହୁଏ । ଏହାର ପଶ୍ଚିମ ଭାଗ ପାର୍ବତ୍ୟ ଓ ଉନ୍ନତାନତ ହେତୁ ବୃଷ୍ଟି ଜଳ ସହଜରେ ଗଡ଼ିଯାଏ । ପୂର୍ବଭାଗ ସମତଳ ହେତୁ ସେ ଅଞ୍ଚଳରେ ଜଳ ଜମା ହୋଇ ରହେ । ବଡ଼ ବଡ଼ ନଦୀମାନଙ୍କର ଉଭୟପାର୍ଶ୍ୱସ୍ଥ ସ୍ଥାନମାନ ବନ୍ୟା ଜଳରେ ବୁଡ଼ିଯାଏ ।

୫ । ଜଳବାୟୁ ।

କୌଣସି ସ୍ଥାନର ଜଳବାୟୁ ସେହି ସ୍ଥାନର ଶୀତ, ଗ୍ରୀଷ୍ମ, ମୃତ୍ତିକା ଓ ବର୍ଷା ଉପରେ ନିର୍ଭର କରେ । ମୃତ୍ତିକା ଅପେକ୍ଷା ପ୍ରସ୍ତର ଶୀଘ୍ର ଗରମ ଓ ଥଣ୍ଡା ହୁଏ, ତେଣୁ ଏହି ବିଭାଗର ପଶ୍ଚିମାଞ୍ଚଳ ପୂର୍ବାଞ୍ଚଳ ଅପେକ୍ଷା ଅଧିକ ଗରମ ଓ ଶୁଷ୍କ । ସବୁ ଓ ସବୁଦା ଉତ୍ତାପର ପରିମାଣ ସମାନ ନଥାଏ ।

| ସ୍ଥାନ | ଗ୍ରୀଷ୍ମକାଳୀନ ଉତ୍ତାପ | ଶୀତକାଳୀନ ଉତ୍ତାପ |
|---|---|---|
| କଟକରେ | ୧୦୬ ଡିଗ୍ରୀ | ୬୯ ଡିଗ୍ରୀ |
| ପୁରୀରେ | ୮୯ ,, | ୭୭ ,, |
| ବାଲେଶ୍ୱରରେ | ୯୮ ,, | ୭୪ ,, |
| ସମ୍ବଲପୁରରେ | ୧୧୬ ,, | ୪୯ ,, |
| ଅନୁଗୁଳରେ | ୧୧୪ ,, | ୫୦ ,, |

୬ । ମୃତ୍ତିକା ଓ ଶସ୍ୟ ।

ପୂର୍ବାଞ୍ଚଳର ଖୋର୍ଦ୍ଧା ଅଞ୍ଚଳ ଓ ଓଡ଼ିଶାର ଗଡ଼ଜାତ ଅଞ୍ଚଳ ପର୍ବତ ଓ ପ୍ରସ୍ତରମୟ । ଲଘୁଧାନ, ମକା, ରବିଫସଲ ଓ ନାନାପ୍ରକାର ଫଳ ପ୍ରଚୁର ଜନ୍ମେ । ବିଆଳି ଓ ଶାରଦଧାନ ଓଡ଼ିଶାର ପ୍ରଧାନ ଫସଲ । ଉପକୂଳ ପ୍ରଦେଶର ଭୂମି ବାଲୁକାମୟ ଓ ସାର ବର୍ଜିତ । ତେଣୁ ସେ ଅଞ୍ଚଳରେ ଫସଲ ଭଲ ହୁଏ ନାହିଁ । କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ସମତଳପ୍ରଦେଶ କୃଷ୍ଣମୃତ୍ତିକା ପୂର୍ଣ୍ଣ ଏବଂ ନାନାପ୍ରକାର ଶସ୍ୟ ଉତ୍ପାଦନ ପକ୍ଷରେ ଉପଯୁକ୍ତ । ମହାନଦୀ,ବଇଙ୍ଗ, ସୁବର୍ଣ୍ଣରେଖା ପ୍ରଭୃତି ନଦୀମାନଙ୍କର ତୀରବର୍ତ୍ତୀ ଭୂମିରେ ପ୍ରଚୁର ପଟୁ ପଡ଼େ । ଧାନ, ଆଖୁ ଓ ସବୁପ୍ରକାର ରବିଫସଲ ତହିଁରେ ଜନ୍ମେ । ପୁରୀଜିଲ୍ଲାର ସରହଦର ଶୁଦ୍ଧପାଣି ଜମି, ଗଧୁଂଆକୂଳ ଜମି ଓ ଜୁଆରୁଆ ନଦୀର କୂଳପ୍ରଦେଶରେ ଦାଳୁଅଧାନ ପ୍ରଚୁର ହୁଏ । ମଟାଳଜମିରେ ଧାନ, କୋଳଥ, ମୁଗ, ବିରି ଓ ଆଖୁ ଅଧିକ ପରିମାଣରେ ଜନ୍ମେ ।

ଚଟ୍ଟାମାଟିରେ ଜଳ ଭେଦକରି ଯାଇପାରେ ନାହିଁ । ତହିଁରେ ତେଣୁ ଭଲ ଫସଲ ହୁଏ ନାହିଁ । ଦୋରସା ଜମିରେ ବାଲି ଓ ମାଟି ସମପରିମାଣରେ ଥାଏ । ତହିଁରେ ରସ ଥିବାରୁ ବଆଳଧାନ ଓ ରବି-ଫସଲ ଭଲ ହୁଏ । ଲୁଣି ଜମିରେ ଲଘୁ ଶାରଦଧାନ ଅଳ୍ପ ଜନ୍ମେ ।

୭ । ଜୀବଜନ୍ତୁ ।

ଗଡ଼ଜାତ ଅଞ୍ଚଳରେ ଏବଂ କଟକ ଓ ବାଲେଶ୍ୱର ଜିଲ୍ଲାର ଉପକୂଳ ପ୍ରଦେଶରେ ପ୍ରଚୁର ଗୋଚର ଜମି ଥିବାରୁ ଲୋକେ ଗୋରୁ, ଛେଳି, ମେଣ୍ଢା, ମଇଁଷି ବହୁପରିମାଣରେ ପୋଷନ୍ତି । ଗ୍ରାମ-ମାନଙ୍କରେ ବିରାଡ଼ି, କୁକୁର, ଘୋଡ଼ା ପ୍ରଭୃତି ଗ୍ରାମ୍ୟପଶୁ ଦେଖାଯାନ୍ତି, ନୀଚଶ୍ରେଣୀର ଲୋକେ ଗଧ ଓ ଘୁଷୁରି ପାଳନ୍ତି । ବନ୍ୟପଶୁମଧ୍ୟରେ ବାଘ, ଚିତାବାଘ, ଭାଲୁ, ବଣ୍ୟଶୂକର, ଗଧିଆବାଘ, ହରିଣ ଓ ବାଲୁଆ ପ୍ରଧାନ । ସମତଳ ପ୍ରଦେଶରେ ଶସ୍ୟ ଜମି ଅଧିକ ଓ ଗୋଚର ଜମି କମ, ତେଣୁ ସେ ଅଞ୍ଚଳରେ ପାଳିତ ପଶୁର ସଂଖ୍ୟା କମ । ପୁରୀ-ଜିଲ୍ଲାର ଉପକୂଳ ପ୍ରଦେଶ ବାଲୁକାମୟ ଅଟେ । ତେଣୁ ସେ ଅଞ୍ଚଳରେ ପଶୁ ସଂଖ୍ୟା କମ କିନ୍ତୁ ବାଲିରେ ବାଲିହରିଣ ଦେଖାଯାନ୍ତି ।

୮ । ପ୍ରଧାନ ପ୍ରଧାନ ବସ୍ତି ଓ ନଗର ।

ବାଲେଶ୍ୱର ସବ୍‌ଡିଭିଜନ—ଏହାର ଉତ୍ତରରେ ମେଦିନୀପୁର ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ଭଦ୍ରଖ ସବ୍‌ଡିଭିଜନ ଓ ପଶ୍ଚିମରେ ନୀଳଗିରି ଓ ମୟୂରଭଞ୍ଜ । ଏହାର ଗ୍ରାମ ସଂଖ୍ୟା ୨୨୩୮ ଓ ଲୋକସଂଖ୍ୟା ୫୦୧୯୦୦ ଅଟେ । ବାଲେଶ୍ୱର ନଗର ପୂର୍ବେ ବାଣିଜ୍ୟର କେନ୍ଦ୍ରସ୍ଥଳ ଥିଲା । ୧୬୪୨ ଖ୍ରୀଷ୍ଟାବ୍ଦରେ ଇଂରାଜମାନେ ଏଠାକୁ ବାଣିଜ୍ୟ କରିବାକୁ ଆସିଥିଲେ । ଏହା ପୂର୍ବଠାରୁ ପ୍ରାଚୀନ ଇଉରୋପୀୟ ବାଣିଜ୍ୟସ୍ଥଳ । ଏହା ଏକସମୟରେ ଇଂରାଜ, ଫରାସି, ପର୍ତ୍ତୁଗିଜ, ଦିନାମାର ଓ ଓଲନ୍ଦାଜମାନଙ୍କର ବାଣିଜ୍ୟର କେନ୍ଦ୍ରସ୍ଥଳ ଥିଲା । ଜଲେଶ୍ୱର ଜଗନ୍ନାଥ ସଡ଼କ ପାର୍ଶ୍ୱସ୍ଥ ନଗର । ଏହାର

ନିକଟସ୍ଥ ମୋଗଲମାରି ନାମକ ସ୍ଥାନରେ ଦାଉଦ ଓ ମନାମଖାଁଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ରେମୁଣାରେ କ୍ଷୀରଚୋରା ଗୋପୀନାଥଙ୍କର ମନ୍ଦିର ଅଛି । ଏହା ଉତ୍କୃଷ୍ଟ କଂସା ବାସନ ପାଇଁ ବିଖ୍ୟାତ । ମାଧବେନ୍ଦ୍ର ପୁରୀ ଓ ଚୈତନ୍ୟଦେବଙ୍କ ଆଗମନରେ ସ୍ଥାନଟି ପବିତ୍ର ହୋଇଅଛି, ଏହା ଗୋଟିଏ ପ୍ରଧାନ ତୀର୍ଥ ସ୍ଥାନ । ପିପିଲି ସୁବର୍ଣ୍ଣରେଖା ନଦୀ ମୁହାଣସ୍ଥ ପ୍ରଧାନ ବନ୍ଦର । ଏହା ପର୍ତ୍ତୁଗିଜ ଓ ଓଲନ୍ଦାଜମାନଙ୍କର ଉପନିବେଶସ୍ଥଳ ଥିଲା । ଆରାକାନର ଦସ୍ୟୁମାନେ ଏହି ସ୍ଥାନରେ କ୍ରୀତଦାସ ବ୍ୟବସାୟ କରୁଥିଲେ । ରାଇବଣିଆରେ ହରିହରରାଜାର ଗଡ଼ ଥିଲା । ମୁକୁନ୍ଦଦେବ ସୀମାନ୍ତ ପ୍ରଦେଶ ରକ୍ଷା ନିମନ୍ତେ ଏଠାରେ ଯେଉଁ ଗଡ଼ ନିର୍ମାଣ କରିଥିଲେ ତାହାର ଭଗ୍ନାବଶେଷ ଦେଖାଯାଏ । କଳାପାହାଡ଼ ୧୫୬୮ ଖ୍ରୀଷ୍ଟାବ୍ଦରେ ଏହି ସ୍ଥାନ ଅଧିକାର କରିଥିଲେ । ତାହାଙ୍କ ଦୌରାତ୍ମ୍ୟରେ ଏଠାର କୀଚକେଶ୍ୱରୀ [illegible] ମୟୂରଭଞ୍ଜର ରାଜଧାନୀ ବାରିପଦାକୁ [illegible] ଥିଲା ।

ଭଦ୍ରଖ ସ: ଡି:—ଏହାର ଉତ୍ତରରେ ବାଲେଶ୍ୱର ସ: ଡି: ପୂର୍ବରେ ସମୁଦ୍ର ଦକ୍ଷିଣରେ ବୈତରଣୀନଦୀ ଓ କଟକଜିଲା ଏବଂ ପଶ୍ଚିମରେ କେନ୍ଦୁଝର । ଏହାର ଗ୍ରାମସଂଖ୍ୟା ୧୨୪୭ ଓ ଲୋକସଂଖ୍ୟା ୪୩୮୬୦୧ । ଭଦ୍ରଖ ନଗର ସାଳନ୍ଦୀକୂଳରେ ଏବଂ ଜଗନ୍ନାଥ ସଡ଼କପାର୍ଶ୍ୱରେ ଅବସ୍ଥିତ । ଏହା ଭଦ୍ରକାଳୀଙ୍କ ମନ୍ଦିର ନିମନ୍ତେ ପ୍ରସିଦ୍ଧ । ଏହା ଗୋଟିଏ ପ୍ରାଚୀନ ସମୃଦ୍ଧିଶାଳୀ ନଗର ।* ଧାମନଗର ଧର୍ମନଗର ଶବ୍ଦର ଅପଭ୍ରଂଶ । କଳାପାହାଡ଼ ସମୟରୁ ଏଠାର ହିନ୍ଦୁ-ମଠ ମକ୍ତବରେ ପରିଣତ ହୋଇଅଛି । ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ମୁସଲମାନ । ସେମାନେ ଉର୍ଦ୍ଦୁ, ଆରବି, ପାର୍ସିଭାଷାର ବିଶେଷ ଚର୍ଚ୍ଚା କରନ୍ତି । ଚାନ୍ଦବାଲି ବର୍ତ୍ତମାନ ଓଡ଼ିଶା ପ୍ରଦେଶମଧ୍ୟରେ ସର୍ବପ୍ରଧାନ ବନ୍ଦର । କୁପାରୀରେ ବୌଦ୍ଧ କୀର୍ତ୍ତି ଅଛି ।

---

* ଏଠାରେ ସରକାରଙ୍କର କଚେରୀ, ହାଇସ୍କୁଲ ଓ ଡାକ୍ତରଖାନା ଅଛି ।

**କଟକ ସଃ ଡ଼ିଃ**—ଏହାର ଉତ୍ତରରେ କେନ୍ଦ୍ରାପଡ଼ା ସଃ ଡ଼ିଃ ପୂର୍ବରେ ସମୁଦ୍ର, ଦକ୍ଷିଣରେ ପୁରୀଜିଲ୍ଲା ଓ ପଶ୍ଚିମରେ ଖଣ୍ଡପଡ଼ା, ବଡ଼ମ୍ବା, ତିଗିରିଆ ଓ ଅଠଗଡ଼ । ଏହାର ଗ୍ରାମ ସଂଖ୍ୟା ୨୬୩୯ ଓ ଲୋକସଂଖ୍ୟା ୧୦୪୩୩୦୧ । କଟକ ବର୍ତ୍ତମାନ ଓଡ଼ିଶାର ରାଜଧାନୀ ।

ଏହା ପୂର୍ବେ ମଧ୍ୟ ପ୍ରାଚୀନ ହିନ୍ଦୁରାଜାଙ୍କର ରାଜଧାନୀ ଥିଲା । ୯୬୦ ଖ୍ରୀଷ୍ଟାବ୍ଦରେ ମର୍କତକେଶରୀ ଏହି ନଗର ସ୍ଥାପନ କରିଥିଲେ । ମୁକୁନ୍ଦଦେବ ଏଠାର ବାରବାଟୀ କିଲ୍ଲା ନିର୍ମାଣ କରିଥିଲେ । ପୂର୍ବେ ମୋଗଲ ଓ ମହର୍ଟ୍ଟା ଶାସନକର୍ତ୍ତାମାନେ ଲାଲବାଗ କୋଠିରେ ବାସ କରୁଥିଲେ । ବର୍ତ୍ତମାନ ଏହା ଓଡ଼ିଶାର କମିଶନ ସାହେବଙ୍କ ବାସଭବନ । ଏଠାରେ ଚଣ୍ଡୀ ଓ କାଳୀଠାକୁରାଣୀଙ୍କର ମନ୍ଦିର ଅଛି । ସୁନା ରୂପାର ତାରକସି କାମନ୍ତେ ଏହା ବିଖ୍ୟାତ । ଏଠାରେ ଜଜ, କମିଶନର ଓ ମାଜିଷ୍ଟ୍ରେଟ୍ ସାହେବଙ୍କ କଚେରୀ । ରେଭେନ୍ସା କଲେଜ, ରେଭେନ୍ସା ବାଳିକା [illegible], ଜିଲ୍ଲାସ୍କୁଲ, ମେଡ଼ିକେଲସ୍କୁଲ, ଟ୍ରେନିଂସ୍କୁଲ, ଇଞ୍ଜିନିଅରିଂସ୍କୁଲ, ଜେଲଖାନା, ଡାକ୍ତରଖାନା, ଛାପାଖାନା ଓ ଜୋତାର କାରଖାନା ଅଛି । କାଠଯୋଡ଼ିର ପଥରବନ୍ଧ ପ୍ରାଚୀନ ହିନ୍ଦୁକୀର୍ତ୍ତି ଅଟେ । ମହାନଦୀର ଜଳ ଅଣିକଟଦ୍ୱାରା ରକ୍ଷିତ । ଧବଳେଶ୍ୱରରେ ଧବଳେଶ୍ୱର ମହାଦେବଙ୍କ ମନ୍ଦିର ଅଛି । ଏହା ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନ । ବାଙ୍କି ପୂର୍ବେ ଗଡ଼ଜାତର ଗୋଟିଏ ଅଂଶ ଥିଲା । ୧୮୪୦ ସାଲରେ ଗଭର୍ଣ୍ଣମେଣ୍ଟ ବାଙ୍କିରାଜାଙ୍କୁ ନରହତ୍ୟା ଅପରାଧରେ ଆଜୀବନ କଏଦ କରି ରାଜ୍ୟକୁ ଖାସ କଲେ । ଏଠାରେ ସରକାରଙ୍କର କଚେରୀ ଓ ଚର୍ଚ୍ଚିକାଦେବୀଙ୍କ ମନ୍ଦିର ଅଛି । ଚଉଦ୍ୱାର ପୂର୍ବ ହିନ୍ଦୁରାଜାଙ୍କର ରାଜଧାନୀ । ଏଠାରେ ପ୍ରାଚୀନଦୁର୍ଗର ଭଗ୍ନାବଶେଷ ଅଛି । ମହାବିନାୟକ ବଇଦାସପୁର ରେଲଷ୍ଟେସନର ଅଳ୍ପଦୂରରେ ଅବସ୍ଥିତ । ଏହା ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନ ଓ ଗଣେଶକ୍ଷେତ୍ର ନାମରେ କଥିତ । ଏଠାରେ ଗୋଟିଏ କ୍ଷୁଦ୍ର ଜଳପ୍ରପାତ ଅଛି ।

ଯାଜପୁର ସଃ ଡ଼ିଃ—ଏହାର ଉତ୍ତରରେ ବୈତରଣୀନଦୀ ପୂର୍ବରେ ସମୁଦ୍ର, ଦକ୍ଷିଣରେ ରାଜକାପୃ ସୀମା ଓ ପଶ୍ଚିମରେ ଗଡ଼ଜାତ ଏହାର ଗ୍ରାମସଂଖ୍ୟା ୧୬୧୫ ଓ ଲୋକସଂଖ୍ୟା ୫୪୨୬୦୪ । ଯାଜପୁର ଯଯାତିକେଶରୀଙ୍କ ରାଜଧାନୀ ଥିଲା । ଦଶାଶ୍ୱମେଧଯଜ୍ଞ ସମୟରେ ଯଯାତି କନୌଜରୁ ଦଶସହସ୍ର ବେଦଜ୍ଞ ବ୍ରାହ୍ମଣ ଏଠାକୁ ଅଣାଇ-ଥିଲେ । ଯାଜପୁରକୁ ବିରଜାକ୍ଷେତ୍ର ଓ ନାଭିଗୟା କହନ୍ତି । ଏଠାରେ ବିରଜାଦେବୀଙ୍କ ମନ୍ଦିର, ବରାହନାଥଙ୍କ ମନ୍ଦିର, ସପ୍ତମାତୃକା, ଶୁଭସ୍ତମ୍ଭ ଦଶାଶ୍ୱମେଧଘାଟ ଅଛି । ଏଠାରେ ସରକାରଙ୍କ କଚେରୀ, ଡାକ୍ତର-ଖାନା, ହାଇସ୍କୁଲ, ରେଜଷ୍ଟ୍ରୀଖାନା, ବିରଜାସ୍କୁଲ ଓ ଗୋଟିଏ ହାଟ ଅଛି । ଅଲତିଗିରି, ନଳତିଗିରି, ରତ୍ନଗିରି, ଉଦୟଗିରି, ଛତିଆ ପାହାଡ଼ ( ଅମରାବତୀ ) ଓ ଅଲମଗିରିର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋହର । କନିକା ଓ ଅଳରେ ଜଣେ ଜଣେ ରାଜା ଅଛନ୍ତି ।

କେନ୍ଦ୍ରପଡ଼ା ସ: ଡ଼ି:—ଏହାର ପୂର୍ବରେ ସମୁଦ୍ର ଓ ଅନ୍ୟ ତିନିଦିଗରେ ରାଜକାପୃ ସୀମା ଅଛି । ଏହାର ଗ୍ରାମସଂଖ୍ୟା ୧୩୭୫ ଓ ଲୋକସଂଖ୍ୟା ୪୭୮୭୭୩ । କେନ୍ଦ୍ରପଡ଼ା ବଳଦେବଜିଙ୍କ ମନ୍ଦିର ଓ ବାଣିଜ୍ୟସ୍ଥଳୀ ନିମନ୍ତେ ବିଖ୍ୟାତ । ଏଠାରେ ସରକାରଙ୍କ କଚେରୀ ହାଇସ୍କୁଲ ଓ ଡାକ୍ତରଖାନା ଅଛି ।

ପୁରୀ ସ: ଡି:—ଏହାର ଉତ୍ତରରେ କଟକଜିଲ୍ଲା, ପୂର୍ବ ଓ ଦକ୍ଷିଣରେ ସମୁଦ୍ର ଓ ଗଞ୍ଜାମଜିଲ୍ଲା ଏବଂ ପଶ୍ଚିମରେ ରାଜକାପୃ ସୀମା । ଏଠାରେ ୧୮୮୩ ଗୋଟି ଗ୍ରାମ ଓ ୬୧୪୬୫୪ ଜଣ ଲୋକ ଅଛନ୍ତି । ପୁରୀ ଜଗନ୍ନାଥଙ୍କ ମନ୍ଦିର ପାଇଁ ଭାରତବିଖ୍ୟାତ । ଏଠାରେ ଶଙ୍କରାଚାର୍ଯ୍ୟ ମଠ ଓ ଅନ୍ୟାନ୍ୟ ଅନେକ ବୈଷ୍ଣବ ମଠ ଅଛି । ଏହା ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନ । ଏଠାରେ ବିହାରଓଡ଼ିଶା ସରକାରଙ୍କର ଗ୍ରୀଷ୍ମକାଳୀନ ସ୍ୱାସ୍ଥ୍ୟନିବାସ ଅଛି । ଏହା ବ୍ୟତୀତ ସରକାରଙ୍କ କଚେରୀ ଜିଲ୍ଲାସ୍କୁଲ, ସଂସ୍କୃତ କଲେଜ, ଡାକ୍ତରଖାନା

ଓ ଜେଲଖାନା ଅଛି । ନରେନ୍ଦ୍ର ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ, ଗୁଣ୍ଡିଚା ମନ୍ଦିର ଓ ସ୍ୱର୍ଗଦ୍ୱାର ଦର୍ଶନୀୟ ସ୍ଥାନ । ନିକଟସ୍ଥ ଲୋକନାଥଙ୍କଠାରେ ଶିବରାତ୍ରି ଦିନ ଗୋଟିଏ ମେଳା ହୁଏ । ସତ୍ୟବାଦୀରେ ସାକ୍ଷୀଗୋପାଳ ଅଛନ୍ତି । ଓଡ଼ିଶା ରାଜା ପୁରୁଷୋତ୍ତମଦେବ କାଞ୍ଚି ଯୁଦ୍ଧ ସମୟରେ ସାକ୍ଷୀଗୋପାଳ ନାମକ କୃଷ୍ଣମୂର୍ତ୍ତିକୁ ଆଣି ଏଠାରେ ସ୍ଥାପନ କରାଇଥିଲେ । କୋଣାର୍କରେ ପ୍ରସିଦ୍ଧ ସୂର୍ଯ୍ୟମନ୍ଦିରର ଭଗ୍ନାବଶେଷ ଅଛି । ନରସିଂହଦେବ ଏହି ମନ୍ଦିର ନିର୍ମାଣ କରାଇଥିଲେ । ଏହାର କାରୁକାର୍ଯ୍ୟ ପୃଥିବୀବିଖ୍ୟାତ । ନିକଟରେ ଚନ୍ଦ୍ରଭାଗାତୀର୍ଥ ଅଛି । କାକଟପୁରରେ ମଙ୍ଗଳାଠାକୁରାଣୀଙ୍କର ମନ୍ଦିର ଅଛି । ପିପିଲି ସିଲାଇ କାର୍ଯ୍ୟ ଓ ବାଲକାଟି କଂସାବାସନ ନିମନ୍ତେ ବିଖ୍ୟାତ ।

ଖୋର୍ଦ୍ଧା ସ: ଡ଼:—ଏହାର ଉତ୍ତରରେ କଟକଜିଲ୍ଲା, ପୂର୍ବରେ ପୁରୀ ସ: ଡ଼:, ଦକ୍ଷିଣରେ ଦୟାନଦୀ ଓ ଚିଲିକାହ୍ରଦ ଏବଂ ପଶ୍ଚିମରେ ଗଞ୍ଜାମଜିଲ୍ଲା ଓ ରଣପୁର । ଏହାର ଗ୍ରାମସଂଖ୍ୟା ୧୧୫୭ ଓ ଲୋକସଂଖ୍ୟା ୩୩୭୮୯୯ । ଖୋର୍ଦ୍ଧା ପୂର୍ବେ ପୁରୀ ରାଜାଙ୍କର ରାଜଧାନୀ ଥିଲା । ୧୮୦୪ ଖ୍ରୀଷ୍ଟାବ୍ଦରୁ ଏହା ସରକାରଙ୍କ ଦଖଲରେ ଅଛି । ନିକଟସ୍ଥ ବରୁଣାଇ ପାହାଡ଼ରେ ବରୁଣାଇକରୁଣାଇଙ୍କ ମନ୍ଦିର ଅଛି । ଅତ୍ରି ଗ୍ରାମରେ ହଟକେଶ୍ୱରଦେବଙ୍କ ମନ୍ଦିର ଓ ଉଷ୍ଣପ୍ରସ୍ରବଣ ଅଛି । ଖୋର୍ଦ୍ଧା ସରକାରଙ୍କର ଖାସମହଲ ଅଟେ । ଏଠାରେ ସରକାରଙ୍କ କଚେରୀ, ହାଇସ୍କୁଲ, ଡାକ୍ତରଖାନା, ଜେଲଖାନା ଓ ଟ୍ରେନିଂସ୍କୁଲ ଅଛି । ଭୁବନେଶ୍ୱରର ଅନ୍ୟନାମ ଏକାମ୍ରକାନନ । ଏଠାରେ ପ୍ରସିଦ୍ଧ ଶିବମନ୍ଦିର ପ୍ରାୟ ଜଗନ୍ନାଥଙ୍କ ମନ୍ଦିରଠାରୁ ଉଚ୍ଚ । ମହାଦେବଙ୍କର ନାମ ଲିଙ୍ଗରାଜ । ଲିଙ୍ଗରାଜ ମନ୍ଦିର, ପାର୍ବତୀ ମନ୍ଦିର ଓ ଗଣେଶ, ପାର୍ବତୀ, କାର୍ତ୍ତିକ ମୂର୍ତ୍ତି ପ୍ରାଚୀନ କାରୁକାର୍ଯ୍ୟରେ ଶୋଭାପାଉ ଅଛି । ଅନ୍ୟାନ୍ୟ ପ୍ରାଚୀନକୀର୍ତ୍ତି ମଧ୍ୟରେ ମେଘେଶ୍ୱର, ମୁକ୍ତେଶ୍ୱର, ସିଦ୍ଧେଶ୍ୱର, କେଦାରେଶ୍ୱର ପ୍ରଧାନ । ଖଣ୍ଡଗିରି ଓ ଉଦୟଗିରି ଉପର ଗୁମ୍ଫାମାନ

ଅଶୋକଙ୍କର କୀର୍ତ୍ତି ଅଛି । ଧଉଳୀଗିରିର ଅଶ୍ୱସ୍ତମ୍ଭ ପାହାଡ଼ରେ ଅଶୋକଙ୍କ ଅନୁଶାସନ ପାଲିଭାଷାରେ ଖୋଦିତ ହୋଇଅଛି । ଏଠାରେ ବୌଦ୍ଧମଠ ଥିଲା । ଏହାର ଜଳବାୟୁ ଭଲ । ବାଣପୁରରେ ଭଗବତୀଙ୍କ ମନ୍ଦିର ଅଛି ।

ସମ୍ବଲପୁର ସଃ ଡ଼ିଃ—ଏହାର ଉତ୍ତରରେ ଗାଙ୍ଗପୁର ଓ ବାମଣ୍ଡା, ପୂର୍ବରେ ବାମଣ୍ଡା ଓ ରେଢ଼ାଖୋଲ, ଦକ୍ଷିଣରେ ରେଢ଼ାଖୋଲ ଓ ସୋନପୁର ଏବଂ ପଶ୍ଚିମରେ ମଧ୍ୟପ୍ରଦେଶ । ଏହାର ଗ୍ରାମ ସଂଖ୍ୟା ୭୬୩ ଓ ଲୋକ ସଂଖ୍ୟା ୩୦୩୭୧୯ ସମ୍ବଲପୁର ସମଲାଇ ଠାକୁରାଣୀଙ୍କ ମନ୍ଦିର ପାଇଁ ବିଖ୍ୟାତ । ଏଠାରେ ସରକାରଙ୍କ କଚେରି, ହାଇସ୍କୁଲ ଓ ଡାକ୍ତରଖାନା ଅଛି, ଝାଡ଼ସୁଗୁଡ଼ା ରେଲଓ୍ୱେ ଜଙ୍କସନ ଓ ବାଣିଜ୍ୟସ୍ଥଳୀ । ନରସିଂହନାଥ ନରସିଂହନାଥ ମନ୍ଦିର ଓ ପାପହାରିଣୀ ନାମକ ନାଳ ପାଇଁ ବିଖ୍ୟାତ । ରେମ୍ପେଲା ଗୋଟିଏ ବଡ଼ ଗ୍ରାମ ଏବଂ ବ୍ରାହ୍ମଣ ଓ ତନ୍ତି ସଂଖ୍ୟା ଏଠାରେ ବେଶି ।

ବରଗଡ଼ ସଃ ଡ଼ି—ଏହାର ଉତ୍ତରରେ ସାରଙ୍ଗଗଡ଼, ଫୁଲଝର ଓ ପଦ୍ମପୁର, ପୂର୍ବରେ ମହାନଦୀ, ଦକ୍ଷିଣରେ ପାଟଣା, ସୋନପୁର ଓ ପଶ୍ଚିମରେ ଖଡ଼ିଆଲ । ଏଠାରେ ୧୦୬୫ ଗ୍ରାମ ଓ ୪୮୫୭୪୭ ଜଣ ଲୋକ ଅଛନ୍ତି । ବରପାଲି ଗୋଟିଏ କ୍ଷୁଦ୍ର ରାଜ୍ୟର ରାଜଧାନୀ । ବୁଢ଼ାସମ୍ବର ଗୋଟିଏ ପ୍ରାଚୀନ ସ୍ଥାନ ।

ଅନୁଗୁଳ—ଏହାର ଉତ୍ତରରେ ରେଢ଼ାଖୋଲ, ବାମଣ୍ଡା ଓ ତାଳଚେର, ପୂର୍ବରେ ତାଳଚେର, ହିନ୍ଦୋଳ ଓ ଢେଙ୍କାନାଳ, ଦକ୍ଷିଣରେ ହିନ୍ଦୋଳ, ନରସିଂହପୁର ଏବଂ ପଶ୍ଚିମରେ ବୌଦ୍ଧ ଓ ଆଠମଲ୍ଲିକ ଏହାର ଗ୍ରାମ ସଂଖ୍ୟା ୪୬୭ ଓ ଲୋକ ସଂଖ୍ୟା

୧୦୮୩୧୫ ଅଟେ ଅନୁଗୁଳ ଏହାର ରାଜଧାନୀ । ଏହାର ବର୍ତ୍ତମାନ ନାମ ଅଙ୍ଗୁଲ, ପୁରୁଣାଗଡ଼କୁ ପୂର୍ବେ ହୁଲୁରସିଙ୍ଗା କହୁଥିଲେ, ଏହା ଅନୁଗୁଳର ପୂର୍ବ ରାଜଧାନୀ ।

କନ୍ଧମାଳ— ଏହାର ଉତ୍ତରରେ ବୌଦ, ପୂର୍ବରେ ବୌଦ, ଦକ୍ଷିଣରେ ଘୁମୁସର ଓ ଚକାଖିମେଡ଼ି ଏବଂ ପଶ୍ଚିମରେ ବୌଦ । ଏହାର ଗ୍ରାମ ଓ ଲୋକ ସଂଖ୍ୟା ଯଥା କ୍ରମେ ୧୦୯୫ ଓ ୭୪୨୫୯ ଅଟେ । ଫୁଲବାଣୀ ଗୋଟିଏ ପ୍ରଧାନ ସ୍ଥାନ । କନ୍ଧମାନେ ଏହାକୁ ଦାମସିଂ କହନ୍ତି ।

୯ । ସ୍ଥଳ ଓ ଜଳପଥ ।

ଓଡ଼ିଶା ଟ୍ରଙ୍କରୋଡ଼ ମେଦନୀପୁରରୁ ଗଞ୍ଜାମପର୍ଯ୍ୟନ୍ତ ବିସ୍ତୃତ । କଟକରୁ ପୁରୀ ପର୍ଯ୍ୟନ୍ତ ସଡ଼କକୁ ଜଗନ୍ନାଥ ସଡ଼କ କହନ୍ତି । ରେଲ ହେବା ପୂର୍ବରୁ ଲୋକେ ଏହିବାଟେ ଯିବା ଆସିବା କରୁଥିଲେ । କଟକରୁ ଖୋର୍ଦ୍ଧା ବାଟେ ଗଞ୍ଜାମ ପର୍ଯ୍ୟନ୍ତ ବିସ୍ତୃତ ସଡ଼କକୁ ଗଞ୍ଜାମରୋଡ଼ କହନ୍ତି । କଟକ ସୋନପୁର ସଡ଼କ କଟକରୁ ବାଙ୍କିବାଟେ ସୋନପୁର ପର୍ଯ୍ୟନ୍ତ ବିସ୍ତୃତ । କଟକ ସମ୍ବଲପୁର ସଡ଼କ କଟକରୁ ଅଠଗଡ଼ ବାଟେ ସମ୍ବଲପୁର ଯାଇଅଛି । ଅନୁଗୁଳ ରୋଡ଼ କଟକରୁ ଢେଙ୍କାନାଳ ବାଟେ ଅନୁଗୁଳ ପର୍ଯ୍ୟନ୍ତ ବିସ୍ତୃତ । ଅନୁଗୁଳରୁ କନ୍ଧମାଳ ପର୍ଯ୍ୟନ୍ତ ଗୋଟିଏ ସଡ଼କ ଓ କନ୍ଧମାଳରୁ ରସେଲକୁଣ୍ଡା ପର୍ଯ୍ୟନ୍ତ ଅନ୍ୟ ଗୋଟିଏ ସଡ଼କ ଯାଇଅଛି । ଗ୍ରେଟ୍ ଇଷ୍ଟାର୍ଣ୍ଣ ରୋଡ଼ ନାଗପୁରରୁ ରାଏପୁର ଓ ସମ୍ବଲପୁର ଦେଇ କଟକ ପର୍ଯ୍ୟନ୍ତ ଆସିଅଛି । ଏହା ବ୍ୟତୀତ ସମ୍ବଲପୁର ବରଗଡ଼ ସଡ଼କ, ସମ୍ବଲପୁରରୁ ଧାମା ଦେଇ ସୋନପୁର ସଡ଼କ, ବରଗଡ଼ରୁ ବରପାଲି ଦେଇ ବଲାଙ୍ଗୀର ସଡ଼କ, ସମ୍ବଲ-ପୁରରୁ ଝଡ଼ାସୁର ଦେଇ ମେଦନୀପୁର ସଡ଼କ, ସମ୍ବଲପୁରରୁ ବାମଣ୍ଡା ଦେଇ ମେଦନୀପୁର ସଡ଼କ ଓ ସମ୍ବଲପୁରରୁ ରାଞ୍ଚି ସଡ଼କ ପ୍ରଧାନ । ଏହା ବ୍ୟତୀତ ଅନ୍ୟାନ୍ୟ କେତେକ ଡିଷ୍ଟ୍ରିକ୍ଟ ରୋଡ଼

ମଧ୍ୟ ଅଛି । ରେଲବର୍ତ୍ମ—ବେଙ୍ଗଲ ନାଗପୁର ରେଲଓ୍ୱେ ମେଦିନୀ-
ପୁର ଜିଲ୍ଲାରୁ ଗଞ୍ଜାମ ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ । ପ୍ରଧାନ ପ୍ରଧାନ
ଷ୍ଟେସନମାନଙ୍କ ନାମ ଲକ୍ଷ୍ମଣନାଥ ରୋଡ଼; ଜଲେଶ୍ୱର, ଅମର୍ଦ୍ଦା ରୋଡ଼
ବସ୍ତା, ରୂପସା, ହଳଦୀପଦା, ବାଲେଶ୍ୱର, ଖନ୍ତାପଡ଼ା, ବାହାନଗା-
ବଜାର, ସୋରୋ, ମାରକୋଣା, ଭଦ୍ରକ, ବେନୂଆପଦା, ବୈତରଣୀ-
ରୋଡ଼, ଯାଜପୁର ରୋଡ, କେନାପୁର, ଗଡ଼ମଧୁପୁର, ହରିଦାସପୁର,
ଧାନମଣ୍ଡଳ, ବଇଙ୍ଗା, କପିଳାସ ରୋଡ଼, ଜଗତପୁର, କଟକ, ବାରଙ୍ଗ
ମଞ୍ଚେଶ୍ୱର, ଭୁବନେଶ୍ୱର, ଖଣ୍ଡଗିରିରୋଡ଼, ଜଟଣି, (ଖୋର୍ଦ୍ଧାରୋଡ଼)
ଛିଢପୁର, ଡାପଙ୍ଗ, ନରଙ୍କାରପୁର, ଭୁଷଣ୍ଡପୁର, କାଲୁପଡ଼ାଘାଟ,
ହୁମ୍ମା, ଗଙ୍ଗାଧରପୁର, ବାଲୁଗାଁ ଅଟେ । ଓଡ଼ିଶାରେ ବେଙ୍ଗଲ
ନାଗପୁର ରେଲଓ୍ୱେର ତିନଗୋଟି ଶାଖା ଲାଇନ ଅଛି ।
(୧) ମୟୂରଭଞ୍ଜ ଷ୍ଟେଟ ରେଲଓ୍ୱେ ରୂପସାଠାରୁ ତାଳବନ୍ଧ ପର୍ଯ୍ୟନ୍ତ
ବିସ୍ତୃତ । (୨) ତାଲଚେର ଲାଇନ କପିଳାସରୋଡ଼ ନିକଟସ୍ଥ
ନର୍ଗୁଣ୍ଡିରୁ ତାଲଚେର ପର୍ଯ୍ୟନ୍ତ ଯାଇଅଛି । (୩) ପୁରୀ ଲାଇନ
ଖୋର୍ଦ୍ଧା ରୋଡ଼ଠାରୁ ପୁରୀ ପର୍ଯ୍ୟନ୍ତ ବିସ୍ତୃତ । ଜଳପଥ—
ମହାନଦୀରୁ ଗଙ୍ଗାନଦୀଯାଏ ଯେଉଁ କେନାଲ ଯାଇଅଛି ତାହାର
ଯେଉଁ ଅଂଶ କଟକଜିଲ୍ଲା ମଧ୍ୟରେ ଅଛି ତାହାକୁ କେନ୍ଦ୍ରାପଡ଼ା
କେନାଲ ଓ ବାଲେଶ୍ୱର ଜିଲ୍ଲାରେ ଯେଉଁ ଅଂଶ ଅଛି ତାହାକୁ
କୋଷ୍ଟ କେନାଲ କହନ୍ତି । କଟକରୁ ଭଦ୍ରକ ପର୍ଯ୍ୟନ୍ତ ବିସ୍ତୃତ
କେନାଲକୁ ହାଇଲେଭଲ କେନାଲ, କଟକରୁ ପାଟ୍ଟାମୁଣ୍ଡାଇ ପର୍ଯ୍ୟନ୍ତ
ବିସ୍ତୃତ କେନାଲକୁ ପାଟ୍ଟାମୁଣ୍ଡାଇ କେନାଲ, କଟକରୁ ସମୁଦ୍ର ପର୍ଯ୍ୟନ୍ତ
ବିସ୍ତୃତ କେନାଲକୁ ତାଳଦଣ୍ଡା କେନାଲ ଓ କଟକରୁ ମାଛଗାଁ ପର୍ଯ୍ୟନ୍ତ
ବିସ୍ତୃତ କେନାଲକୁ ମାଛଗାଁ କେନାଲ କହନ୍ତି । କଟକରୁ ସମ୍ବଲପୁର
ପର୍ଯ୍ୟନ୍ତ ମହାନଦୀ ସେପରି ନାବ୍ୟ ଓଡ଼ିଶାର ଅନ୍ୟାନ୍ୟ ନଦୀମାନ
ସେପରି ନୁହେଁ । କେବଳ ବଲଙ୍ଗ, ସୁବର୍ଣ୍ଣରେଖା ଓ ବୈତରଣୀରେ

କେତେକ ଦୂର ପର୍ଯ୍ୟନ୍ତ ନୌକା ଯିବା ଆସିବା କରେ । ସମୁଦ୍ର ବାଟେ କେବେ କେବେ ଷ୍ଟିମବୋଟ ଓ ପ୍ରସ୍ତକ ଜାହାଜ ଆସେ ।

## ୧୦ । ଅଧିବାସୀ ଓ ଭାଷା ।

ଓଡ଼ିଶାର ଅଧିବାସୀମାନଙ୍କ ମଧ୍ୟରୁ ଶତକଡ଼ା ୮୭ ଜଣ ହିନ୍ଦୁ, ୩ ଜଣ ମୁସଲମାନ, ଜଣେ ଖ୍ରୀଷ୍ଟାନ୍ ଓ ୯ ଜଣ ଅନାର୍ଯ୍ୟ ଓ ଅନ୍ୟାନ୍ୟ ଧର୍ମାବଲମ୍ବୀ ଅଛନ୍ତି । ଏଠାରେ ବ୍ରାହ୍ମଣ, କରଣ, ଖଣ୍ଡାଏତ, ଓଡ଼, ଚଷା, ଗଉଡ଼ ପ୍ରଭୃତି ନାନାଜାତିର ଲୋକ ବାସ କରନ୍ତି । ବାଲେଶ୍ୱର ଓ କଟକ ଜିଲ୍ଲାରେ ଖଣ୍ଡାଏତ, ପୁରୀରେ ବ୍ରାହ୍ମଣ ଓ ଚଷା ଏବଂ ଅନୁଗୁଳ ଓ ସମ୍ବଲପୁରରେ ଅନାର୍ଯ୍ୟ ଓ ଜଡ଼ୋପାସକଙ୍କ ସଂଖ୍ୟା ଅଧିକ । ହିନ୍ଦୁମାନଙ୍କ ମଧ୍ୟରେ ବ୍ରାହ୍ମଣ, ପଣ୍ଡା, ପଣ୍ଡାଅଢ,ପାରୁଆ ସାଧାରଣ ବ୍ରାହ୍ମଣମଧ୍ୟରେ ଗଣ୍ୟ । ବ୍ରାହ୍ମଣମାନେ ବିଷ୍ଣୁ ଓ ଶିବ ଉପାସକ ଅଟନ୍ତି । ଅନ୍ୟାନ୍ୟ ହିନ୍ଦୁମାନେ ବୈଷ୍ଣବ ଧର୍ମାବଲମ୍ବୀ ଅଟନ୍ତି । କେତେକ ମୁସଲମାନ ଓ ଖ୍ରୀଷ୍ଟଧର୍ମର ଲୋକ ଅଛନ୍ତି । ଓଡ଼ିଆମାନେ ଓଡ଼ିଆଭାଷା, ବଙ୍ଗାଳୀ ଓ ମୁସଲମାନମାନେ ବାହାରେ ଓଡ଼ିଆଭାଷା ଏବଂ ଘରେ ବଙ୍ଗଳା ଓ ଉର୍ଦ୍ଦୁ ଭାଷା ବ୍ୟବହାର କରନ୍ତି । କେତେକ ଲୋକ ହିନ୍ଦି ଓ ଅନାର୍ଯ୍ୟ ଭାଷାରେ କଥା କହନ୍ତି । କେତେକ ଲୋକ ମଧ୍ୟ ଇଂରାଜୀ ଭାଷା ବ୍ୟବହାର କରନ୍ତି ।

## ୧୧ । ଜୀବିକା ।

ଓଡ଼ିଶାବାସୀଙ୍କର କୃଷି ପ୍ରଧାନ ଜୀବିକା ଅଟେ । ବାଲେଶ୍ୱରର ଲୋକେ କଂସା ବା ପଥର ବାସନ କରି ଓ କଟକର ଲୋକେ ସୁନା ରୁପାର ତାରକସିକାମ, ଜରିର ସରୁ କାମ । ସିଂଗନିର୍ମିତ ଦ୍ରବ୍ୟ ଓ ମାଟିର କଣ୍ଢେଇ ତିଆରି କରି ଜୀବିକା ନିର୍ବାହ କରନ୍ତି । ପୁରୀଜିଲ୍ଲା ଅନ୍ତର୍ଗତ ପିପିଲି ଓ ରଥିଟଜମାର ଲୋକେ ଗନ୍ଦୁଆ, ବଟୁଆ ଓ କଂସା ବାସନ ତିଆରି କରି ଚଳନ୍ତି । ପୁରୀ, ଭୁବନେଶ୍ୱର ପ୍ରଭୃତି ତୀର୍ଥ ସ୍ଥାନର

ଲୋକମାନଙ୍କର ଦେବସେବା ପ୍ରଧାନ ଜୀବିକା । ଏହି ଜିଲ୍ଲାରେ କେତେକ ଲୋକେ ଘଷାବୃତ୍ତିଦ୍ୱାରା ଜୀବିକା ନିର୍ବାହ କରନ୍ତି । ସମୁଦ୍ର ଓ ଚିଲିକାକୂଳସ୍ଥ ଲୋକମାନେ ମାଛ ଧରି ଜୀବିକା ନିର୍ବାହ କରନ୍ତି । କେତେକ ନୀଚଶ୍ରେଣୀର ଲୋକ ଜଙ୍ଗଲରୁ କାଠ ଦାଣ୍ଡି ଛାଡ଼ି ବିକ୍ରୟଦ୍ୱାରା ଜୀବିକା ନିର୍ବାହ କରନ୍ତି । କେତେକ ଲୋକ ସରକାରୀ କାର୍ଯ୍ୟ କରି ଓ ଜମିଦାରୀ ସିରସ୍ତାରେ ଲେଖାପଢ଼ି କରି ନିଜର ଜୀବିକା ନିର୍ବାହ କରନ୍ତି । କେତେକ ଲୋକ ବାଣିଜ୍ୟଦ୍ୱାରା ଜୀବିକା ଚଳାନ୍ତି । କେତେକ ଲୋକ ଲୁଗା, ପଥରକୋଇଲା, କିରୋସିନୀତେଲ ସରୁଲୁଗା, ଗୁ, ଚିନି, ଗହମ, ତେଲ, ଘିଅ, ଗୁଡ଼, ମସଲା ଇତ୍ୟାଦି ପଦାର୍ଥ ବିଦେଶରୁ ଆଣି, ଗୁଣ୍ଡଚାଉଳ, ଧାନ, ମାଛ, ଶୁଖୁଆ, ପଥର ବାସନ, କଂସାବାସନ, ଦଉଡ଼ି, ବାଉଁଶଡ଼ା, କୋଚିଲମଞ୍ଜି, ଚମଡ଼ା ଓ ହାଡ଼ ବିଦେଶକୁ ପଠାଇ ଜୀବିକା ନିର୍ବାହ କରନ୍ତି । ଗଉଡ଼, ଭଣ୍ଡାରୀ, ଧୋବା ପ୍ରଭୃତି ନିଜନିଜର ପେଶାଦ୍ୱାରା ଜୀବିକା ଚଳାନ୍ତି ।

୧୨ । ମାନଚିତ୍ରାଙ୍କନ ।

ଶିକ୍ଷକ ଓଡ଼ିଶା ଡିଭିଜନର ଦୈର୍ଘ୍ୟପ୍ରସ୍ଥ ମାପି କୌଣସି ନିର୍ଦ୍ଧାରିତ ସ୍କେଲ ଅନୁସାରେ ଗୋଟିଏ ଆୟତ କ୍ଷେତ୍ର ଅଙ୍କନ କରିବେ ଏବଂ ଏହାର ଦୈର୍ଘ୍ୟ, ପ୍ରସ୍ଥ ସହିତ ଡିଭିଜନର ସୀମାନ୍ତ ରେଖାମାନଙ୍କର ସମ୍ବନ୍ଧ ଦେଖାଇ ଦେବେ । ପରେ ଜିଲ୍ଲାର ସୀମାମାନ ନିର୍ଦ୍ଦେଶ କରିବେ ଓ ନଦୀ, ପର୍ବତ, ନଗରମାନଙ୍କର ଅବସ୍ଥିତି ଦେଖାଇ-ଦେବେ । ବାଳକମାନେ ନିଜ ନିଜ ଖାତାରେ ସେହିପରି ଅଙ୍କନ କରିବେ ଓ ଶିକ୍ଷକ ମଧ୍ୟେ ମଧ୍ୟେ ସଂଶୋଧନ କରିଦେଉଥିବେ ।

୧୩ । ଶାସନ ପ୍ରଣାଳୀ ।

ପ୍ରତ୍ୟେକ ଜିଲ୍ଲାର ଶାସନ ପ୍ରଣାଳୀ ବାଲେଶ୍ୱର ଜିଲ୍ଲା ପରି । ଦେଶୀୟ ରାଜ୍ୟମାନ ଜଣେ ଜଣେ ରାଜାଙ୍କଦ୍ୱାରା ଶାସିତ ହୁଏ । ଇଂରା

ସ୍ଥାନମାନଙ୍କର ଶାସନକାର୍ଯ୍ୟ ପୋଲିଟିକାଲ ଏଜେଣ୍ଟ ଦେଖନ୍ତି ।
ଜିଲା ମାଜିଷ୍ଟ୍ରେଟ୍ ଓ ପୋଲିଟିକାଲ ଏଜେଣ୍ଟଙ୍କ ଉପରେ ଜଣେ
କମିଶନ ସାହେବ ଅଛନ୍ତି । ଜିଲାର ଅପିଲ ଓ ଦୋହରା ମୋକଦ୍ଦମା
ମାନ ଜଜ୍‌ସାହେବ ବୁଝନ୍ତି ।

୧୪ । ଆଦର୍ଶ ପ୍ରଶ୍ନାବଳୀ ।

୧ । ଓଡ଼ିଶାର ପ୍ରଧାନ ପ୍ରଧାନ ପର୍ବତମାନଙ୍କର ନାମ କଅଣ ?
୨ । ଏହା କ କ ଜିଲାରେ ବଇଛି ?
୩ । ଏହାର ସମ୍ଭଲପ୍ରଦେଶରେ କ କ ସଂଖ୍ୟା ଜନ୍ମେ ?
୪ । ଲୋକେ କ କ ଭାଷାରେ କଥା କହନ୍ତି ?
୫ । ପ୍ରତ୍ୟେକ ଜିଲା କ କ ସବ୍‌ଡିଭିଜନରେ ବିଭକ୍ତ ?

## ବିହାର ଓଡ଼ିଶା ପ୍ରୋଭିନସ୍ ( ସୁବା )

### ୧ । ସୁବାର ଋଲ୍ପ୍ ।

ପ୍ରୋଭିନ୍ସର ଅନ୍ୟ ନାମ ସୁବା ଅଟେ । ବିହାରଓଡ଼ିଶା ସୁବାର
ଆକାର ପ୍ରାୟ ବିଷମବାହୁ ଚତୁର୍ଭୁଜ ପରି । ଏହାର ଦୈର୍ଘ୍ୟ ୪୮୦
ମାଇଲ ଓ ପ୍ରସ୍ଥ ୨୧୬ ମାଇଲ । ଏହାର ଦକ୍ଷିଣାଂଶ ଦକ୍ଷିଣଅଞ୍ଚଳରୁ
ଉଚ୍ଚ ଓ ଉତ୍ତର ଅଞ୍ଚଳ କ୍ରମନିମ୍ନ ଅଟେ । ଏହାର ଉତ୍ତରରୁ
ହିମାଳୟର ଜଳ ଓ ଦକ୍ଷିଣରୁ ଛୋଟନାଗପୁର ମାଳଭୂମିର ଜଳ
ଗଙ୍ଗାନଦୀରେ ପଡ଼ୁଅଛି । ପର୍ବତମାନଙ୍କ ମଧ୍ୟରେ ସାତ୍ପୁରା, ଗନ୍ଧମାଦନ,
ମଲୟଗିରି; ରାଜମହଲର ପର୍ବତମାଳା ରାମଗଡ଼, ହାଜାରିବାଗ
ପ୍ରସ୍ଥ, ଡୁଙ୍ଗରଗଡ଼ ଓ ବାଦାମ ପାହାଡ଼ ପ୍ରଧାନ ।

### ୨ । ନଦୀ ।

ଗଙ୍ଗାନଦୀ ସାହାବାଦ ଜିଲାର ଚଉସାଘାଟଠାରେ ବିହାର
ଓଡ଼ିଶା ପ୍ରଦେଶରେ ପ୍ରବେଶ କରି ପୂର୍ବାଭିମୁଖରେ କିଛିଦୂର ଯାଇ
ଦକ୍ଷିଣାଭିମୁଖରେ ପ୍ରବାହିତ ହୋଇଅଛି । ଏହା କୂଳରେ ଆରା,
ଦାନାପୁର, ପାଟଣା, ଭାଗଲପୁର, ସାହେବଗଞ୍ଜ ଅବସ୍ଥିତ ।

ବ୍ରାହ୍ମଣୀ ଛୋଟନାଗପୁର ପର୍ବତରୁ ବାହାରି ବଙ୍ଗୋପସାଗରରେ ପଡ଼ିଅଛି । ପଟ୍ଟାମୁଣ୍ଡାଇ ଓ ଧର୍ମଶାଳା ଏହା କୂଳରେ ଅବସ୍ଥିତ । ଏହାର ଶାଖାନଦୀର ନାମ ଖରସୁଅଁ ।

ମହାନଦୀ ମଧ୍ୟପ୍ରଦେଶରୁ ବାହାରି ସମ୍ବଲପୁରଠାରେ ଏହି ପ୍ରଦେଶରେ ପ୍ରବେଶ କରି ବଉଦ, ଅଠମଲ୍ଲିକ ଓ କଟକଜିଲ୍ଲା ଦେଇ ବଙ୍ଗୋପସାଗରରେ ପଡ଼ିଅଛି । ସମ୍ବଲପୁର, କଣ୍ଟିଲୋ ଓ କଟକନଗର ଏହା କୂଳରେ ଅବସ୍ଥିତ । କାଠଯୋଡ଼ି, ବିରୁପା, ପାଇକା ଓ ଚିତ୍ରୋତ୍ପଳା ଏହା'ର ପ୍ରଧାନ ଶାଖାନଦୀ । ଶୋଣ ଉପନଦୀ, ଦକ୍ଷିଣରୁ ଉତ୍ତରକୁ ଯାଇ ଘର୍ଘରା, ଗଣ୍ଡକ, କୁଶୀର ଉତ୍ତରରୁ ଦକ୍ଷିଣାଭିମୁଖୀ ହୋଇ ଗଙ୍ଗାସଙ୍ଗେ ମିଶିଅଛି । ଘର୍ଘରା କୂଳରେ ଛାପରା, ଶୋଣ-କୂଳରେ ଆରା, ଗଣ୍ଡକକୂଳରେ ହାଜିପୁର । ଦାମୋଦର ଓ ବରାକର ଛୋଟନାଗପୁର ପର୍ବତରୁ ବାହାରି ପୂର୍ବାଭିମୁଖରେ ବହି ଯାଇଅଛି । ପୁନପୁନ, ମୋରହର, ଯମୁନା, ଥାକଣ, ଫଲ୍‌ଗୁ, କର୍ମନାଶା, ଦୁର୍ଗାବତୀ, ସୋମପୁରା, ଚନ୍ଦ୍ରକ, ବୁଢ଼ିଗଣ୍ଡକ, ଛୟା, ମାଘ, କମଳା-ଭଲ୍‌ଗୁତ, କୁଶୀ, ମହାନନ୍ଦା, ସୁବର୍ଣ୍ଣରେଖା, କନହାର ପ୍ରଭୃତି କେତୋଟି କ୍ଷୁଦ୍ରନଦୀ ଏହି ପ୍ରଦେଶରେ ଅଛି ।

୭ । ସୁବାର ରିଲଫ୍ ନିର୍ମାଣ ।

ଶିକ୍ଷକ କୌଣସି ନିର୍ଦ୍ଦିଷ୍ଟ ସ୍କେଲ୍ ଅନୁସାରେ ସୁବାର ସୀମାନ୍ତ ରେଖାମାନ ପେନସିଲଦ୍ୱାରା ଅଙ୍କନ କରିବେ । ତାହାଦ୍ୱାରା ଉକ୍ତ ସୀମା ମଧ୍ୟରେ ସମତଳଭୂମି, ଉଚ୍ଚଭୂମି, ଢାଲୁ ଅଂଶମାନ ଦେଖାଇ ଦେବେ । ପର୍ବତର ଉଚ୍ଚତା, ନଦୀର ପଥ ଓ ଗଭୀରତା ଉକ୍ତ ସ୍କେଲ ଅନୁସାରେ ମଧ୍ୟ ନିର୍ଦ୍ଦେଶ କରିବେ । ବାଳକମାନେ ଶିକ୍ଷକଙ୍କ ଆଦର୍ଶ ଅନୁସାରେ ନିଜ ନିଜ ଖାତାରେ ସୁବାର ରିଲଫ୍‌ମ୍ୟାପ ଅଙ୍କନ କରିବେ ଏବଂ ଆବଶ୍ୟକ ସ୍ଥଳରେ ଶିକ୍ଷକଙ୍କର ସାହାଯ୍ୟ ମଧ୍ୟ ଗ୍ରହଣ କରିବେ ।

## ୪ । ବୃଷ୍ଟି ।

ଯେଉଁ ମେଘ ବଙ୍ଗୋପସାଗରରୁ ଆସେ ତାହା ହିମାଳୟ ପର୍ବତ ଓ ଛୋଟନାଗପୁର ପର୍ବତଶ୍ରେଣୀରେ ବାଧାପ୍ରାପ୍ତ ହୋଇ ବୃଷ୍ଟି ଆକାରରେ ପଡ଼େ । ବୃଷ୍ଟିପାତର ଅଳ୍ପାଧିକ୍ୟ ଅନୁସାରେ ସମସ୍ତ ସୁବା ୪ ଭାଗରେ ବିଭକ୍ତ । ଯଥା—(୧) ଗଙ୍ଗାନଦୀର ଉତ୍ତର ପାର୍ଶ୍ୱସ୍ଥ ଜିଲ୍ଲାମାନ । (୨) ଗଙ୍ଗାନଦୀର ଦକ୍ଷିଣପାର୍ଶ୍ୱସ୍ଥ ଜିଲ୍ଲାମାନ । (୩) ଛୋଟନାଗପୁର ଉପତ୍ୟକା । (୪) ଓଡ଼ିଶାର ସୀମାନ୍ତ ପ୍ରଦେଶ । ଓଡ଼ିଶାର ସୀମାନ୍ତ ପ୍ରଦେଶରେ ସବୁଠାରୁ ଅଧିକ ବୃଷ୍ଟି ହୁଏ । ଗଙ୍ଗାର ଉତ୍ତରପାର୍ଶ୍ୱସ୍ଥ ଜିଲ୍ଲାମାନଙ୍କରେ ତଦପେକ୍ଷା ଅଳ୍ପ; ଛୋଟନାଗପୁର ଉପତ୍ୟକାରେ ଗଙ୍ଗାର ଉତ୍ତରପାର୍ଶ୍ୱ ଜିଲ୍ଲାମାନଙ୍କ ଅପେକ୍ଷା ଅଳ୍ପ ଓ ଗଙ୍ଗାର ଦକ୍ଷିଣପାର୍ଶ୍ୱସ୍ଥ ଜିଲ୍ଲାମାନଙ୍କରେ ସର୍ବାପେକ୍ଷା ଅଳ୍ପ ବୃଷ୍ଟି ହୁଏ । ବୃଷ୍ଟିପାତର ପରିମାଣ ଓଡ଼ିଶାରେ ହାରାହାରି ୫୬ ଇଞ୍ଚ, ଗଙ୍ଗାନଦୀର ଉତ୍ତରପାର୍ଶ୍ୱସ୍ଥ ଜିଲ୍ଲାମାନଙ୍କରେ ୫୩ ଇଞ୍ଚ ଛୋଟନାଗପୁର ଉପତ୍ୟକାରେ ୫୨ ଇଞ୍ଚ ଓ ଗଙ୍ଗାନଦୀର ଦକ୍ଷିଣ ପାର୍ଶ୍ୱସ୍ଥ ଜିଲ୍ଲାମାନଙ୍କରେ ୪୬ ଇଞ୍ଚ ଅଟେ ।

## ୫ । ଜଳବାୟୁ ।

ବୃଷ୍ଟିପାତ ଅନୁସାରେ ଶୀତ ଓ ଗ୍ରୀଷ୍ମଋତୁର ପ୍ରଭେଦ ଦେଖାଯାଏ । ଯେଉଁଠାରେ ବୃଷ୍ଟି ଅଳ୍ପ ସେଠାରେ ଶୀତ ଅଳ୍ପ ଏବଂ ଯେଉଁଠାରେ ବୃଷ୍ଟି ଅଧିକ ସେଠାରେ ଶୀତ ଅଧିକ ହୁଏ । ଭୂମିର ଉଚ୍ଚତା ବା ନିମ୍ନତା ଏବଂ ମୃତ୍ତିକାର ଗଠନ ଉପରେ ଗ୍ରୀଷ୍ମଋତୁର ଅଳ୍ପତା ବା ଆଧିକ୍ୟ ନିର୍ଭର କରେ । ଜଳଭାଗ ସ୍ଥଳଭାଗ ଅପେକ୍ଷା ବିଳମ୍ବରେ ଉଷ୍ଣ ବା ଶୀତଳ ହୁଏ । ତେଣୁ ସମୁଦ୍ରକୂଳବର୍ତ୍ତୀ ସ୍ଥାନମାନଙ୍କରେ ବେଶି ଶୀତ କିମ୍ବା ବେଶି ଗ୍ରୀଷ୍ମ ଜଣାଯାଏ ନାହିଁ । ଶୀତକାଳରେ ଛୋଟନାଗପୁର ପ୍ଲେଟୋ ଉପରେ ଅଧିକ ଶୀତ ହୁଏ, ତେଣୁ ସେହି ସ୍ଥାନ ଶୀତପ୍ରଧାନ ଦେଶସ୍ଥ ଲୋକମାନଙ୍କ ପକ୍ଷରେ ଅଧିକ ସୁଖକର ।

ଗଙ୍ଗାନଦୀର ଉତ୍ତରପାର୍ଶ୍ୱସ୍ଥ ଜିଲ୍ଲାମାନ ସମୁଦ୍ରଠାରୁ ଦୂରରେ ଅବସ୍ଥିତ ଏବଂ ସେଠାରେ ଅଧିକ ବୃଷ୍ଟି ଓ ଅଳ୍ପ ଗ୍ରୀଷ୍ମ ହୁଏ ତେଣୁ ଉକ୍ତ ସ୍ଥାନମାନଙ୍କରେ ଶୀତଋତୁରେ ଅଧିକ ଶୀତ ଓ ଗ୍ରୀଷ୍ମଋତୁରେ ଅଳ୍ପ ଗ୍ରୀଷ୍ମ ହୁଏ । ଗଙ୍ଗା ଓ ଛୋଟନାଗପୁର ପ୍ଲେଟୋ ମଧ୍ୟସ୍ଥ ଭୂମି ନିମ୍ନ, ସମୁଦ୍ରଠାରୁ ଦୂରରେ ଅବସ୍ଥିତ ଓ ବୃଷ୍ଟିପାତର ପରିମାଣ ଅଳ୍ପ ତେଣୁ ଉକ୍ତ ସ୍ଥାନରେ ଶୀତଋତୁରେ ଅଳ୍ପ ଶୀତ ଓ ଗ୍ରୀଷ୍ମଋତୁରେ ଅଧିକ ଗ୍ରୀଷ୍ମ ହୁଏ । ଓଡ଼ିଶାର ଉପକୂଳ ପ୍ରଦେଶରେ ଶୀତଋତୁରେ ଶୀତ ଅଳ୍ପ ଓ ଗ୍ରୀଷ୍ମଋତୁରେ ଗ୍ରୀଷ୍ମ ଅଳ୍ପ ଅନୁଭୂତ ହୁଏ ଅର୍ଥାତ ଶୀତ ଓ ଗ୍ରୀଷ୍ମ ସମପରିମାଣରେ ହୁଏ । କିନ୍ତୁ ଉପକୂଳଠାରୁ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ଓ ଉଚ୍ଚପ୍ରଦେଶରେ ଶୀତ ଓ ଗ୍ରୀଷ୍ମର ବିଶେଷ ପ୍ରଭେଦ ଦେଖାଯାଏ ।

୬ । ଉତ୍ପନ୍ନ ଶସ୍ୟ ।

ଗଙ୍ଗାନଦୀର ଉତ୍ତରପାର୍ଶ୍ୱସ୍ଥ ମସୃଣ ମୃତ୍ତିକାରେ ରବି ଫସଲ ହୁଏ ଏବଂ କୌଣସି କୌଣସି ସ୍ଥାନରେ ଧାନ ମଧ୍ୟ ହୁଏ । ପୂର୍ଣ୍ଣିଆ ଜିଲ୍ଲାରେ ଝୋଟ ପ୍ରଚୁର ହୁଏ । ଗଙ୍ଗାନଦୀ ଓ ଛୋଟନାଗପୁର ପ୍ଲେଟୋର ମଧ୍ୟବର୍ତ୍ତୀ ପର୍ବତପାର୍ଶ୍ୱସ୍ଥ କଙ୍କରମୟ ଭୂମିରେ ବିଆଲିଧାନ ଓ ରବିଫସଲ ହୁଏ । ନଦୀପାର୍ଶ୍ୱସ୍ଥ ବାଲିଚର ଭୂମିରେ କେବଳ ରବି ଫସଲ ହୁଏ । ସମତଳ ପ୍ରଦେଶସ୍ଥ କୃଷ୍ଣମୃତ୍ତିକାପୂର୍ଣ୍ଣ ଭୂମିରେ ଶାରଦଧାନ ହୁଏ । ଛୋଟନାଗପୁରର ଅଧିକାଂଶ ସ୍ଥାନ ଜଙ୍ଗଲ ଓ ପର୍ବତମୟ । ପର୍ବତ ନିକଟସ୍ଥ କଙ୍କରମୟ ଭୂମିରେ ବିଆଲିଧାନ ଓ ରବି ଫସଲ; ନଦୀପାର୍ଶ୍ୱସ୍ଥ ବାଲିଚର ଭୂମିରେ କେବଳ ରବିଫସଲ ଓ ତୈଳବୀଜ ଓ କୃଷ୍ଣମୃତ୍ତିକାପୂର୍ଣ୍ଣ ଉର୍ବର ସମତଳ ଭୂମିରେ ଶାରଦ ଧାନ ଉତ୍ପନ୍ନ ହୁଏ । ଓଡ଼ିଶାର ପର୍ବତ ଓ ଜଙ୍ଗଲମୟ ପଶ୍ଚିମ ସୀମାନ୍ତ ପ୍ରଦେଶର କୃଷ୍ଣମୃତ୍ତିକାପୂର୍ଣ୍ଣ ନିମ୍ନଭୂମିରେ, ଅତ୍ୟୁର୍ବର ଉପକୂଳ ପ୍ରଦେଶର ଦୂରବର୍ତ୍ତୀ କୃଷ୍ଣମୃତ୍ତିକାପୂର୍ଣ୍ଣ ଭୂମିରେ, ନଦୀପାର୍ଶ୍ୱସ୍ଥ

ବାଲୁକାମୟ ଭୂମିରେ ଓ ମୃଣ୍ଣ ମୃତ୍ତିକାପୂର୍ଣ୍ଣ ସମତଳ ଭୂମିରେ ଧାନ ଉତ୍ପନ୍ନ ହୁଏ ।

୭ । ଖଣିଜ ପଦାର୍ଥ ।

( ୧ ) କଙ୍କର ପୂର୍ଣ୍ଣିଆଜିଲ୍ଲା ବ୍ୟତୀତ ଗଙ୍ଗାର ଉତ୍ତରପାର୍ଶ୍ୱସ୍ଥ ସମସ୍ତ ଜିଲ୍ଲାରେ ମିଳେ । ଏହା ରାସ୍ତା ନିର୍ମାଣ କାର୍ଯ୍ୟରେ ଲାଗେ । ( ୨ ) ଗେଙ୍ଗୁଟ ( ଗଙ୍ଗାମୃତ୍ତିକା ) ପୂର୍ଣ୍ଣିଆଜିଲ୍ଲା ବ୍ୟତୀତ ଗଙ୍ଗାର ଉତ୍ତରପାର୍ଶ୍ୱସ୍ଥ ସମସ୍ତ ଜିଲ୍ଲାରେ, ଗଙ୍ଗାର ଦକ୍ଷିଣପାର୍ଶ୍ୱସ୍ଥ ଗୟା ଓ ସାହାବାଦ ଜିଲ୍ଲାରେ, ଛୋଟନାଗପୁରସ୍ଥ ପାଲାମୌ, ମାନଭୂମ ଓ ସିଂହଭୂମ ଜିଲ୍ଲାରେ, ଓଡ଼ିଶାର ସମ୍ବଲପୁର ଜିଲ୍ଲାରେ ଓ ସମସ୍ତ ଦେଶୀୟ ରାଜ୍ୟରେ ମିଳେ । ଏଥିରୁ ଚୂନ ପ୍ରସ୍ତୁତ ହୁଏ । ଏହାକୁ ପଥରଚୂନ କହନ୍ତି । ଏହା କାନ୍ଥଗାନ୍ଥନୀ ଓ ପଲସ୍ତରା ଆଦି କାର୍ଯ୍ୟରେ ଲାଗେ । ( ୩ ) ପୂର୍ଣ୍ଣିଆଜିଲ୍ଲାଭିନ୍ନ ଗଙ୍ଗାର ଉତ୍ତରସ୍ଥ ସମସ୍ତ ଜିଲ୍ଲାର ଓ ଗୟାର ଜାହାନାବାଦ ସବଡ଼ିଭିଜନର ଲୁଣି ମାଟିରୁ ଲବଣ ଓ ସୋରା ପ୍ରସ୍ତୁତ ହୁଏ । ସୋରାଭିନ୍ନ ବାରୁଦ ପ୍ରସ୍ତୁତ ହୋଇପାରେ ନାହିଁ ( ୪ )- ଗୟାର ନଓୟାଦା ସବ୍‌ଡ଼ିଭିଜନରେ, ହଜାରୀବାଗ ଓ ଖେଦାରଭଙ୍ଗା ନିକଟରେ ଏବଂ ହଜାରିବାଗ ଓ ସମ୍ବଲପୁରରେ ଅଭ୍ର ମିଳେ । ଏହା କଣ୍ଡାଇ ନିର୍ମାଣ କାର୍ଯ୍ୟରେ ଲାଗେ ( ୫ ) ଟାଲ୍‌ କୈମୁର ପର୍ବତରେ ମିଳେ । ଏହା ଦ୍ୱାରା ରଙ୍ଗ କରାଯାଏ ( ୬ ) କୈମୁର ପର୍ବତରେ ଯେଉଁ ଲୋହିତ ପ୍ରସ୍ତର ମିଳେ ତାହା ଗୃହ ନିର୍ମାଣ କାର୍ଯ୍ୟରେ ଲାଗେ ( ୭ ) କୃଷ୍ଣପ୍ରସ୍ତର ଗୟାଜିଲ୍ଲାର ଅତୀଥାନାରେ ମିଳେ । ଏହା ଦ୍ୱାରା ବାସନ ଓ ମୂର୍ତ୍ତି ପ୍ରସ୍ତୁତ ହୁଏ ( ୮ ) ଜାମାଲପୁର ନିକଟସ୍ଥ ପର୍ବତରେ ଏକପ୍ରକାର ପ୍ରସ୍ତର ମିଳେ, ତହିଁରୁ ସ୍ଲେଟ ପ୍ରସ୍ତୁତ ହୁଏ । (୯)ପିଟକର ରୋହିତାସ୍‌ଗଡ଼ ନିକଟରେ ମିଳେ । ଏହା ଜଳକୁ ପରିଷ୍କାର

କରେ ଓ ଅନ୍ୟ କେତେକ କାର୍ଯ୍ୟରେ ମଧ୍ୟ ଲାଗେ (୧୦) ପଥର-କୋଇଲା ସାନ୍ତାଳପ୍ରଗଣାର ଜାମତାଡ଼ାରେ, ଦୁମ୍କା ସବ୍‌ଡିଭିଜନରେ, ପାଲାମୌ ଜିଲ୍ଲାର ଡାଲ୍‌ଟନଗଞ୍ଜ, ଔରଙ୍ଗା ଓ ହପ୍ରାରର ନିକଟବର୍ତ୍ତୀ ସ୍ଥାନରେ, ହଜାରିବାଗର ଗିରିଡି, ମାନଭୂମର ଝରିଆ, ଅନୁଗୁଳର ଛେଣ୍ଡପଦା, କଡରଢ଼ଅ, ସମ୍ବଲପୁରର ସମପୁର ନିକଟରେ ଏବ ତାଲଚେର ଓ ଅଠମଲ୍ଲିକରେ ମିଳେ । ଏହା ଜାଳିବା କାର୍ଯ୍ୟରେ ଲାଗେ । ରେଲଗାଡ଼ି, ଜାହାଜ ଓ ଅନ୍ୟାନ୍ୟ ବଡ଼ ବଡ଼ କଳମାନ ଏହାଦ୍ୱାରା ଚାଳିତ ହୁଏ (୧୧) ଲୌହ ପାଲାମୌ, ହଜାରିବାଗ, ରାଞ୍ଚି, ସିଂହଭୂମ, ସମ୍ବଲପୁର ଓ ମୟୂରଭଞ୍ଜରେ ମିଳେ । ଏହାଦ୍ୱାରା କଡ଼ା, ବରଗା, ବାସନ, ଅସ୍ତ୍ର ଶସ୍ତ୍ର, ରେଲରାସ୍ତା ଓ ରେଲଗାଡ଼ି ପ୍ରଭୃତି ଅନେକ କାର୍ଯ୍ୟ ହୁଏ । ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ଏହା ଦ୍ୱାରା ପ୍ରସ୍ତୁତ ହୁଏ (୧୨) ମୁଙ୍ଗେର ଜିଲ୍ଲାର ଚକାଇ ପ୍ରଗଣାରେ, ଖଡ୍ଗପୁରର ପର୍ବତରେ, ଭାଗଲପୁରର ବାଙ୍କା ଓ ଦେଓଘର ସବ୍‌ଡିଭିଜନରେ, ରାଞ୍ଚିଜିଲ୍ଲାର ବାରମାସିଆ ନିକଟରେ, ଏବଂ ସମ୍ବଲ-ପୁରର ଝଲପଡ଼ିଆ, ଝୁନର ଓ ପଦ୍ମପୁର ନିକଟରେ ସୀସାର ଖଣିଅଛି । ଏହା ଦ୍ୱାରା ବନ୍ଧୁକର ଛର୍ରାଗୁଳି, କାଗଜଚପା ଗୋଲି, ଛାପାଖାନାର ଅକ୍ଷର ଓ ନଳ ପ୍ରଭୃତି ପ୍ରସ୍ତୁତ ହୁଏ (୧୩) କୈମୁର ପର୍ବତରେ, ଦେଓଘର ସବ୍‌ଡିଭିଜନରେ ଓ ସିଂହଭୂମ ଜିଲ୍ଲାରେ ତାମ୍ର ମିଳେ । ଏହାଦ୍ୱାରା ତାମ୍ର ମୁଦ୍ରା ଓ ତାମ୍ର ବାସନ ପ୍ରସ୍ତୁତ ହୁଏ ।

## ୮ । ପଶୁ ।

ଏହି ପ୍ରଦେଶର ସମତଳ ଭୂମିରେ କୃଷିକର୍ମର ଆଧିକ୍ୟଯୋଗୁଁ ପ୍ରଚୁର ଶସ୍ୟ ଜନ୍ମେ ଏବଂ ପର୍ବତ ଭୂମିର ଅଳ୍ପତାହେତୁ ପଶ୍ୱାଦିର ଖାଦ୍ୟ ଅଳ୍ପ ମିଳେ । ଯେଉଁ ଅଳ୍ପ ପର୍ବତ ଭୂମି ଥାଏ ତାହାର ଘାସ

ଜନ୍ୟ ଓ ବର୍ଷା ଜଳରେ ସଡ଼ିଯାଏ । ତେଣୁ ବର୍ଷାଋତୁରେ ପଶୁମାନଙ୍କୁ ସ୍ଥାନାନ୍ତରିତ କରାଯାଏ । ଉଚ୍ଚ ସମତଳ ଭୂମିରେ ବେଶି ବର୍ଷା ହୁଏ କିନ୍ତୁ ତାହା ନିମ୍ନଭୂମିକୁ ଚାଲିଯାଏ । ଯେଉଁ ସ୍ଥାନରେ ଉକ୍ତ ଜଳ ଜମା ହୋଇ ରହେ ସେ ସ୍ଥାନ ଜଳାଭୂମିରେ ପରିଣତ ହୁଏ ତେଣୁ ଶସ୍ୟ ଉତ୍ପନ୍ନ ହୁଏ ନାହିଁ, କିନ୍ତୁ ବର୍ଷଯାକ ଘାସ ଥାଏ । ଏହି କାରଣରୁ ସେ ଅଞ୍ଚଳରେ ପଶୁ ସଂଖ୍ୟା ଅଧିକ । ପାର୍ବତ୍ୟ ଅଞ୍ଚଳର ଭୂମି କଠିନ ଓ ପ୍ରସ୍ତରମୟ ଥିବାରୁ ବର୍ଷାଋତୁଭିନ୍ନ ଅନ୍ୟ ସମୟରେ ଘାସ ଅଳ୍ପ ମିଳେ ତେଣୁ ସେ ସ୍ଥାନରେ ଅଳ୍ପ ସଂଖ୍ୟକ ପଶୁ ଦେଖାଯାନ୍ତି ଏବଂ ସେମାନେ ମଧ୍ୟ ଦୁର୍ବଳ ହୁଅନ୍ତି । ଗଙ୍ଗାର ଉତ୍ତରସ୍ଥଳ ଭୂମି ଉଚ୍ଚ ଓ ସମତଳ ଯୋଗୁଁ ଚମ୍ପାରଣର ବଗହା, ଶିକାରପୁରଥାନା, ମଜଫରପୁରର ସୀତାମାଢ଼ି, ଦ୍ୱାରଭଙ୍ଗାର ମଧୁବାଣୀ ସବ୍‌ଡିଭିଜନ ଓ ପୂର୍ଣ୍ଣିଆର ମୋରଙ୍ଗ ଅଞ୍ଚଳରେ ଗୋଚର ଭୂମି ଅଧିକ ତେଣୁ ପଶୁ ସଂଖ୍ୟା ମଧ୍ୟ ଅଧିକ, ଗଙ୍ଗାର ଦକ୍ଷିଣାଂଶ ଭୂମି ଉଚ୍ଚ ଓ ସମତଳ ତେଣୁ ସାହାବାଦ, ଗୟାଜିଲାର ଦକ୍ଷିଣରେ, ଭାଗଲପୁର କଟୋରିଆ ଥାନା ଅନ୍ତର୍ଗତ ଘୋଘରରେ, ଧର୍ମପୁର ପ୍ରଗଣାରେ, ମୁଙ୍ଗେରର ଯୋଗରୀଥାନା ଅନ୍ତର୍ଗତ ଫରକିଆ ପ୍ରଗଣାରେ ଓ ଅନୁଗୁଳ ଜିଲାରେ ଗୋଚର ଭୂମି ଅଧିକ । ପଶୁମାନେ ପ୍ରଚୁର ଖାଦ୍ୟ ପାନ୍ତି ତେଣୁ ସେଠାରେ ବହୁ ସଂଖ୍ୟକ ବଳବାନ ପଶୁ ଦେଖାଯାନ୍ତି । କୈମୁର ପ୍ଲେଟୋ, ରାଜଗୃହର ପର୍ବତ, ରାଜମହଲ ଓ ଖଡ୍ଗପୁର ପର୍ବତ ଏବଂ ଛୋଟନାଗପୁର ଓ ଓଡ଼ିଶାର ପାର୍ବତ୍ୟ ପ୍ରଦେଶମାନଙ୍କରେ କେବଳ ବର୍ଷା ସମୟରେ ପଶୁମାନଙ୍କୁ ଖାଦ୍ୟ ମିଳେ । ତେଣୁ ସେ ସ୍ଥାନର ପଶୁ ଦୁର୍ବଳ ଓ ଅଳ୍ପ ସଂଖ୍ୟକ ଅଟନ୍ତି । ସେହି ସବୁ ସ୍ଥାନରେ ମେଣ୍ଢା, ଛେଳି, ମହିଷ ଓ ଶୁକର ପ୍ରଭୃତି ଗ୍ରାମ୍ୟ ପଶୁ ଓ ନୀଳଗାଈ, ବନ୍ୟଶୂକର, ହରିଣ, ବାଘ, ଚିତାବାଘ, ଭାଲୁ, ଗଧିଆବାଘ, ହସ୍ତୀ ଓ ବୁଢ଼ିଆଣ୍ଡୁକୁର ପ୍ରଭୃତି ଦେଖାଯାନ୍ତି ।

## ୯ । ବିଭାଗ ଓ ନଗର ।

| ବିଭାଜନ | ଜିଲ୍ଲାରନାମ | ଅବସ୍ଥାନ | ପ୍ରଧାନନଗର |
|---|---|---|---|
| ୧ । ପାଟନା | ପାଟନା··· | ଗଙ୍ଗାକୂଳରେ ପ୍ରାୟ ଦୂରମାଇଲ ପର୍ଯ୍ୟନ୍ତ | ପାଟନା । |
| | ଗୟା··· | ପାଟଣାଜିଲ୍ଲାର ଦକ୍ଷିଣରେ ··· | ଗୟା । |
| | ସାହାବାଦ··· | ଗଙ୍ଗା ଓ ଶୋଣର ମଧ୍ୟରେ ··· | ଆରା । |
| ୨ । ତ୍ରିହୁତ | ଚମ୍ପାରଣ·· | ତ୍ରିହୁତବିଭାଜନର ଉତ୍ତର ପଶ୍ଚିମ ଓ ଗଣ୍ଡକ କୂଳରେ··· | ମତିହାରି । |
| | ସାରଣ ··· | ଗଣ୍ଡକ ଓ ଗଙ୍ଗା ମଧ୍ୟରେ ··· | ଛପରା । |
| | ମଜଫରପୁର··· | ଗଣ୍ଡକକୂଳରେ ଓ ସାରଣ ଜିଲ୍ଲାର ପଶ୍ଚିମରେ·· | ମଜଫରପୁର । |
| | ଦ୍ୱାରଭଙ୍ଗା·· | ମଜଫରପୁର ଜିଲ୍ଲାର ପଶ୍ଚିମରେ ······ | ଦ୍ୱାରଭଙ୍ଗା |
| ୩ । ଭାଗଲପୁର | ଭାଗଲପୁର··· | ଗଙ୍ଗାର ଉଭୟକୂଳରେ··· | ଭାଗଲପୁର |
| | ମୁଙ୍ଗେର··· | ଗଙ୍ଗାର ଉଭୟକୂଳରେ··· | ମୁଙ୍ଗେର । |
| | ପୂର୍ଣ୍ଣିଆ··· | ଗଙ୍ଗାର ଉତ୍ତରରେ ଓ ଭାଗଲପୁରଜିଲ୍ଲାର ପୂର୍ବରେ··· | ପୂର୍ଣ୍ଣିଆ । |
| | ସାନ୍ତାଲପ୍ରଗଣା··· | ଭାଗଲପୁର ଜିଲ୍ଲା ଓ ଗଙ୍ଗାର ଦକ୍ଷିଣରେ ·· | ଦେଓଘର । |
| ୪ । ଛୋଟନାଗପୁର | ପାଲାମୌ··· | ସାହାବାଦ ଓ ଗୟାଜିଲ୍ଲାର ଦକ୍ଷିଣରେ ··· | ଡାଲଟନ୍‌ଗଞ୍ଜ । |
| | ହଜାରିବାଗ··· | ପାଲାମୌଜିଲ୍ଲାର ପୂର୍ବରେ ··· | ହଜାରିବାଗ । |
| | ରାଞ୍ଚି | ପାଲାମୌ ଓ ହଜାରିବାଗର ଦକ୍ଷିଣରେ··· | ରାଞ୍ଚି । |
| | ମାନଭୂମ··· | ରାଞ୍ଚି ଜିଲ୍ଲା ପୂର୍ବରେ | ପୁରୁଲିଆ । |
| | ସିଂହଭୂମ··· | ରାଞ୍ଚି ଜିଲ୍ଲାର ଦକ୍ଷିଣରେ | ଚାଇବସା |

୫ । ଓଡ଼ିଶା

କଟକ···ବାଲେଶ୍ୱର ଜିଲ୍ଲାର ଦକ୍ଷିଣରେ ··· କଟକ ।
ପୁରୀ···କଟକଜିଲ୍ଲାରଦକ୍ଷିଣରେ ପୁରୀ ।
ବାଲେଶ୍ୱର···କଟକଜିଲ୍ଲାର ଉତ୍ତରରେ···ବାଲେଶ୍ୱର ।
ସମ୍ବଲପୁର···ଓଡ଼ିଶାର ପଶ୍ଚିମ ଜିଲ୍ଲାସ୍ଥ···ସମ୍ବଲପୁର ।
ଅନୁଗୁଳ···ତାଳଚେର ଓ ଅଠମଲ୍ଲିକ
ରାଜ୍ୟର ମଧ୍ୟରେ ··· ଅନୁଗୁଳ ।

## ୧୦ । ରେଲପଥ ।

(୧) ଗଙ୍ଗାର ଉତ୍ତରରେ ବି, ଏନ, ଡବ୍ଲିଉ ରେଲଓ୍ୱେ ପୂର୍ଣ୍ଣିଆ, ବେଗୁସରାଇ, ସମସ୍ତୀପୁର, ମଣିହାରୀ, ଦ୍ୱାରଭଙ୍ଗା, ସୀତାମାଢ଼ି, ବେତିଆ, ହାଜିପୁର, ଛପରା, ସିଓ୍ୱାନ, ଗୋପାଲଗଞ୍ଜ ଦେଇ ଗଙ୍ଗାର ବାମକୂଳ ପର୍ଯ୍ୟନ୍ତ ଆସିଅଛି । ଲୋକେ ସେଠାରୁ ଷ୍ଟିମାରସାହାଯ୍ୟରେ ଦିଘାଘାଟ, ମୋକାମାଘାଟ, ମୁଙ୍ଗେରଘାଟ, ବରାରିଘାଟ ଓ ସାହେବଗଞ୍ଜଘାଟ ଦେଇ ଗଙ୍ଗାର ଦକ୍ଷିଣକୂଳକୁ ଆସି ଇ, ଆଇ, ରେଲଓ୍ୱେକୁ ଅସନ୍ତି ( ୨ ) ଇ, ଆଇ ରେଲଓ୍ୱେର ପାକୁଡ଼, ରାଜମହଲ, ସାହେବଗଞ୍ଜ, ଭାଗଲପୁର, ମୁଙ୍ଗେର, କିଉଲ, ପାଟନା, ବାଙ୍କିପୁର, ଆରା, ବକ୍ସାର, ଗୟା, ସସାରାମ, ଦେଓଘର, ମଧୁପୁର, ଡାଲଟନଗଞ୍ଜ ପ୍ରଭୃତି ପ୍ରଧାନ ଷ୍ଟେସନ । ଏହି ରେଲଓ୍ୱେର ୫ଗୋଟି ପ୍ରଧାନ ଶାଖାଲାଇନ ଅଛି । ଯଥାଃ— ( କ ) ଲୁପ୍‌ଲାଇନ ପାକୁଡ଼, ମହାରାଜପୁର, ସାହେବଗଞ୍ଜ, ଭାଗଲପୁର, ମାଖନଗର; ଅବଦର ନଗର, ସୁଲତାନଗଞ୍ଜ, ଜମାଲପୁର ଓ କିଉଲନ ଷ୍ଟେସନ ଦେଇ କର୍ଡଲାଇନ ସଙ୍ଗେ ମିଶିଅଛି ( ଖ ) କର୍ଡଲାଇନ ସୀତାରାମପୁର, କୁଲଟୀ, ଧନବାଦ, ହଜାରିବାଗରୋଡ଼, ଗୟା,

ଚିତ୍ରସାଗରରୋଡ଼, ଇସଲାମପୁର, କର୍ମନାଶା ଓ ମୋବାରସରାଇ ଷ୍ଟେସନମାନ ଦେଇ ଅସିଅଛୁ ( ଗ ) ସାଉଥବହାରଲାଇନ, ଵଉତ୍ସନ, ଲକ୍ଷ୍ମୀସରାଇ, ଶେଖପୁର,ବାଣୀଚକ,ନଓସ୍ତାଦା, ମାନପୁର, ଗୟାଷ୍ଟେସନମାନ ଦେଇ ଅସିଅଛୁ ( ଘ ) ଡାଲଟନଗଞ୍ଜବ୍ରାଞ୍ଚ ଶୋନଇଷ୍ଟ ବ୍ୟାଙ୍କ, ଜପଲା, ହାଇଦରନଗର, ମହମ୍ମଦଗଞ୍ଜ ଷ୍ଟେଶନ ଦେଇ ଆସିଅଛୁ (ଙ) ଗୟା କଚରାଯବ୍ରାଞ୍ଚ ମୋଗଲସରାଇ ଗୟାଲାଇନ ସହିତ ମିଳିତ ହୋଇ ଗ୍ରାଣ୍ଡକଡ଼୍ ଲାଇନ ନାମ ଧାରଣ କରିଅଛୁ । ( ୩ ) ବେଙ୍ଗଲ ନାଗପୁର ରେଲଓୱେ ଓଡ଼ିଶା ବିଭାଗର ପ୍ରଧାନ ରେଲ ପଥ । ଏହା ଲକ୍ଷ୍ମଣନାଥ ରୋଡ଼ ଠାରେ ବାଲେଶ୍ୱର ଜିଲାରେ ପ୍ରବେଶ କରି କଟକ, ପୁରୀ ଜିଲାର ମଧ୍ୟ ଦେଇ ବାଲୁଗାଁ ପର୍ଯ୍ୟନ୍ତ ଯାଇଅଛୁ । ଏହାର ୪ ଗୋଟି ଶାଖା ଲାଇନ ଅଛୁ । ଯଥା: —

( ୧ ) ପୁରୀ ଜଗନ୍ନାଥ ଲାଇନ
( ୨ ) ତାଳଚେର ଲାଇନ
( ୩ ) ମୟୂରଭଞ୍ଜଷ୍ଟେଟ ରେଲଓେସ୍
( ୪ ) ଟାଟାନଗର ବାଦାମପାହାଡ଼ ଲାଇନ ।

ଯାଜପୁର ରୋଡ଼ରୁ ଯାଜପୁର ପର୍ଯ୍ୟନ୍ତ, ଯାଜପୁରରୁ କେନ୍ଦ୍ରାପ୍ରର ପର୍ଯ୍ୟନ୍ତ; ଜଗତପୁରରୁ କେନ୍ଦ୍ରାପଡ଼ା ପର୍ଯ୍ୟନ୍ତ, କଟକରୁ ଜଗତସିଂହପୁର ପର୍ଯ୍ୟନ୍ତ, କଟକରୁ ବାଙ୍କି ପର୍ଯ୍ୟନ୍ତ, ଖୋରଧାରୋଡ଼ରୁ ନୟାଗଡ଼ ପର୍ଯ୍ୟନ୍ତ ଓ ତାଳଚେରରୁ ସମ୍ବଲପୁର ପର୍ଯ୍ୟନ୍ତ ମଟର ଯିବା ଆସିବା କରେ । ଡାକ ନେବା ଅଣିବା ନିମିତ୍ତ କଟକରେ ମଟର ମେଲ ସର୍ଭିସ ଖୋଲିଅଛୁ । ସହରମାନଙ୍କରେ ମଟର ଯିବା ଅସିବା କରେ । ଭୁବନେଶ୍ୱର ଷ୍ଟେସନଠାରୁ ଖଣ୍ଡଗିରି ପର୍ଯ୍ୟନ୍ତ ମଟର ଚଳେ ।

## ୧୧ । ଜଳପଥ ।

ଗଙ୍ଗା, ଘର୍ଘର, ଗଣ୍ଡକ, କୁଶୀ, ମହାନନ୍ଦା, ମହାନଦୀ, ବ୍ରାହ୍ମଣୀ ଓ ବୈତରଣୀ ନଦୀରେ ବର୍ଷଯାକ ନୌକା ଯିବା ଆସିବା କରେ ଏବଂ ଅନ୍ୟାନ୍ୟ ଶ୍ରେଷ୍ଠ ନଦୀମାନଙ୍କରେ କେବଳ ବର୍ଷାଋତୁରେ ନୌକା ଯିବାଆସିବା କରେ । କେନାଲ ଜଳପଥ ୨୮ ମାଇଲପର୍ଯ୍ୟନ୍ତ ବିସ୍ତୃତ । ସମୁଦ୍ରରେ ୨୪୦ ମାଇଲ ପର୍ଯ୍ୟନ୍ତ ଗମନାଗମନର ପଥ ଅଛି ।

## ୧୨ । ଜାତି ଓ ଧର୍ମ ।

ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କ ସଂଖ୍ୟା ଯଥାକ୍ରମେ ୩୧୨୦୪୯୧୭, ୩୭୦୨୨୭୭ ଓ ୩୦୩୩୫୮ । ଜୈନ ୪୨୧୦, ବୌଦ୍ଧ ୧୭୪୮, ଶିଖ ୧୫୫୮, ପାର୍ସୀ ୯୩ ଓ ଅନ୍ୟାନ୍ୟ ଜାତିର ଲୋକସଂଖ୍ୟା ୨୩୯୨୧୭ ଅଟେ ।

## ୧୩ । ଭାଷା ।

ବହାର ଓଡ଼ିଶା ପ୍ରଦେଶରେ ଚାରିପ୍ରକାର ଭାଷାର ବ୍ୟବହାର ଦେଖାଯାଏ । ଯଥା :—ଆର୍ଯ୍ୟ, ଅନାର୍ଯ୍ୟ, ପ୍ରାଚ୍ୟ ଓ ପାଶ୍ଚାତ୍ୟ । ହିନ୍ଦୀ, ଓଡ଼ିଆ, ବଙ୍ଗଳା, ଗୁଜରାଟୀ, କଚ୍ଛୀ, ମହାରାଟୀ, ମାରବାଡ଼ି, ନେପାଳୀ, ପଞ୍ଜାବୀ ଓ ପୈଶ୍ତୋ ଭାଷା ଆର୍ଯ୍ୟଭାଷାର ଅନ୍ତର୍ଗତ । ଏମାନଙ୍କର ଲୋକସଂଖ୍ୟା ୩୪୨୩୧୦୦୦ । ମୁଣ୍ଡା ଓ ଦ୍ରାବିଡ଼ ଅନାର୍ଯ୍ୟମାନଙ୍କର ପ୍ରଧାନ ଭାଷା, ଲୋକସଂଖ୍ୟା ୨୭୮୪୦୦୦ । ଆରବୀ, ଭୂଟିଆ, ଜିପ୍‌ସୀ, ଚିନ୍ ଇତ୍ୟାଦି ଭାଷା ପ୍ରାଚ୍ୟ ଭାଷାର ଅନ୍ତର୍ଗତ । ଇଂରାଜୀ, ଫ୍ରେଞ୍ଚ, ଜର୍ମାନ୍ ପ୍ରଭୃତି ଭାଷା ପାଶ୍ଚାତ୍ୟ ଭାଷାର ଅନ୍ତର୍ଗତ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାଷାରେ ୯୦୦୦ ଜଣ କଥା କହନ୍ତି ।

## ୧୪ । ଜୀବିକା ।

କୃଷକମାନେ କୃଷି କରି, ଶିକାରୀମାନେ ଶିକାର କରି, ଧୀବରମାନେ ମାଛ ଧରି, ଗଉଡ଼ମାନେ ପଶୁ ପାଳନ କରି, ସହର ପ୍ରଭୃତି ଶ୍ରେଣୀର ଲୋକେ କାଠ ହାଣି, ମାଳି ଓ ପାଣିଆରି ବ୍ରାହ୍ମଣମାନେ ପାଣିପରିବା କରି, ମୂଲିଆମାନେ ମୂଲ ଲାଗି ନିଜନିଜର ଜୀବିକା ନିର୍ବାହ କରନ୍ତି । କେତେକ ଲୋକ ସୋରି ଓ ଲୁଣ ପ୍ରସ୍ତୁତ କରି, କେତେକ ଶିଳ୍ପକାର୍ଯ୍ୟ କରି ଓ କେତେକ ନିଜନିଜର ପେଶାଦ୍ୱାରା ଜୀବିକା ନିର୍ବାହ କରନ୍ତି । ବାହକମାନଙ୍କ ମଧ୍ୟରେ କେତେକ ଲୋକ ଜାହାଜ ଓ ବୋଟ ଚଳାଇ, କେତେକ ରେଲପଥରେ କାର୍ଯ୍ୟ କରି ଓ ବଳଦ ଗାଡ଼ି ଚଳାଇ ଏବଂ କେତେକ ରେଲ, ପୋଷ୍ଟଅଫିସ ଓ ଟେଲିଫୋନରେ କାର୍ଯ୍ୟ କରି ଜୀବିକା ନିର୍ବାହ କରନ୍ତି । କେହି କେହି ବାଣିଜ୍ୟ ବ୍ୟବସାୟ କରି ନିଜର ଜୀବିକା ନିର୍ବାହ କରନ୍ତି । କେତେକ ଲୋକ ସୈନ୍ୟ ବିଭାଗରେ, ପୁଲିସ ବିଭାଗରେ, ରାଜା ବା କର୍ତ୍ତୃପକ୍ଷଙ୍କ ଅଧୀନରେ ଓ ଭିନ୍ନ ଭିନ୍ନ ସମିତିରେ ଚାକିରି କରି ଜୀବିକା ନିର୍ବାହ କରନ୍ତି । କେତେକ ଲୋକ ପୌରୋହିତ୍ୟ ଓ ଦେବସେବା କରି ଏବଂ କେତେକ ଔଷଧ ଓ ସଙ୍ଗୀତ ଶିକ୍ଷା କରି ଚଳନ୍ତି । ଯାଚକ, ଦ୍ୱାରବାନ, ପାଣିବାଲା ଚାକର, ସଇସ, ଭିକ୍ଷୁକ ଓ ବେଶ୍ୟାମାନେ ନିଜନିଜର ପେଶାଦ୍ୱାରା ଜୀବିକା ଚଳାନ୍ତି । ବାଳକମାନେ ଗୋଟିଏ ଗୋଟିଏ ଆୟତକ୍ଷେତ୍ର ଅଙ୍କନ କରି ତାହାକୁ ଜୀବିକାବଲମ୍ବୀମାନଙ୍କ ସଂଖ୍ୟା ଅନୁସାରେ ଭିନ୍ନ ଭିନ୍ନ ଖଣ୍ଡରେ ବିଭକ୍ତ କରିବେ ଏବଂ ପ୍ରତିଖଣ୍ଡକୁ ହିନ୍ଦୁ ଓ ମୁସଲମାନମାନଙ୍କ ସଂଖ୍ୟା ଅନୁସାରେ ଦୁଇ ଦୁଇ ଅଂଶରେ ବିଭକ୍ତ କରି, ପ୍ରଥମ (ହିନ୍ଦୁ) ଅଂଶରେ ହଳଦିଆ ଓ ଦ୍ୱିତୀୟ (ମୁସଲମାନ) ଅଂଶରେ ଲାଲ ରଙ୍ଗ ଦେଇ ସଂଖ୍ୟାମାନ ଲିଖା କରିବେ ।

| ଜୀବିକା | ସଂଖ୍ୟା | ଶତକଡ଼ା ସଂଖ୍ୟା | ହିନ୍ଦୁ | ମୁସଲମାନ |
|---|---|---|---|---|
| କୃଷିଜୀବ | ୩୦୯୦୦୧୦୪ | ୮୯ | ୨୫୫୮୮୨୦୭ | ୨୮୧୫୮୦୫ |
| ଖଣିଗୋଳଡା ଲୋକ | ୨୦୪୦୪୩ | .୫୫ | ୧୬୮୫୨୮ | ୧୫୮୯୧ |
| ଶିଳ୍ପୀ | ୨୫୯୮୮୫୯ | ୭ | ୨୧୫୭୩୨୦ | ୩୨୩୨୪୭ |
| ବାହକ | ୨୮୪୧୪୪ | .୭୫ | ୨୩୦୫୭୭ | ୩୭୮୭୩ |
| ବ୍ୟବସାୟୀ | ୧୪୪୯୮୧୫ | ୪ | ୧୨୮୪୮୦୪ | ୧୪୯୮୩୭ |
| ସ୍ୱଚଢଅ | ୫୩୨୩୭୫ | ୧.୦୫ | ୪୭୩୭୪୯ | ୫୩୦୧୯ |
| ସୁଦର | ୫୭୪୦୭୨ | ୧.୭ | ୪୪୨୭୫୪ | ୧୨୧୪୩୧ |
| ଅନ୍ୟାନ୍ୟ | ୧୪୯୮୪୫୭ | ୩.୭ | | |
| ମୋଟ | ୩୭୯୭୧୮୫୮ | ୧୦୦ | | |

### ୧୫ । ମାନଚିତ୍ରାଙ୍କନ ।

କୌଣସି ନିର୍ଦ୍ଦିଷ୍ଟ ସ୍କେଲ ଅନୁସାରେ ବ୍ଲାକବୋର୍ଡ଼ରେ ଗୋଟିଏ ସମକୋଣୀ ଚତୁର୍ଭୁଜ କ୍ଷେତ୍ର ଅଙ୍କନ କରି ମାନଚିତ୍ରର ଯେଉଁ ଯେଉଁ ଅଂଶ ଯେଉଁ ଯେଉଁ ବାହୁ ଉପରେ ପଡ଼ିବ ତାହା ଚିହ୍ନିତ କରାଯିବ । ଅଙ୍କିତ ଚିତ୍ରରେ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କର ଦୂରତ୍ୱ ଓ ଦିଗ ଅନୁସାରେ ବିନ୍ଦୁମାନ ନିର୍ଦ୍ଦେଶ କରିବ ଏବଂ ସେହି ବିନ୍ଦୁମାନଙ୍କୁ ଯୋଗକରି ସୀମାନ୍ତ ରେଖା ଟାଣିବ । ତତ୍ପରେ ପର୍ବତ, ନଦୀ, ଉପକୂଳ ଓ ପ୍ରଧାନ ପ୍ରଧାନ ନଗରମାନ ନିର୍ଦ୍ଦେଶ କରି ମାନଚିତ୍ରାଙ୍କନ ଶେଷ କରିବ ।

### ୧୬ । ଶାସନ ପ୍ରଣାଳୀ ।

ବିହାର ଓଡ଼ିଶା ପ୍ରଦେଶ ଜଣେ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହୁଏ । ତାହାଙ୍କର ଗୋଟିଏ ପ୍ରଜାପ୍ରତିନିଧି ସଭା ଅଛି । ପ୍ରତ୍ୟେକ ଜିଲ୍ଲାରୁ କେତେକ ଜଣ ଲୋକ ପ୍ରଜାଙ୍କ ଦ୍ୱାରା ମନୋନୀତ ହୋଇ ଉକ୍ତ ସଭାକୁ ଯାଆନ୍ତି । ରାଜ୍ୟଶାସନ ଏବଂ ବଜେଟ ପ୍ରସ୍ତୁତ ନିମିତ୍ତ ସେମାନଙ୍କର ପରାମର୍ଶ ନିଆଯାଏ । ଜିଲ୍ଲାମାନଙ୍କର ଶାସନ ପ୍ରଣାଳୀ ବାଲେଶ୍ୱର ଜିଲ୍ଲାର ଶାସନପ୍ରଣାଳୀପରି ଏବଂ ବିଭାଗ ମାନଙ୍କର ଶାସନପ୍ରଣାଳୀ ଓଡ଼ିଶା ବିଭାଗର ଶାସନ ପ୍ରଣାଳୀ ପରି ଅଟେ ।

### ୧୭ । ଆଦର୍ଶ ପ୍ରଶ୍ନାବଳୀ ।

( ୧ ) ଗଙ୍ଗା ଓ ମହାନଦୀର ଗତିପଥ ନିର୍ଣ୍ଣୟ କର ।
( ୨ ) ଗଙ୍ଗାର ଉପନଦୀମାନଙ୍କର ନାମ କହ ।
( ୩ ) ବିହାର ଓଡ଼ିଶା ପ୍ରଦେଶ କ କ ବିଭାଗ ଓ ଜିଲ୍ଲାରେ ବିଭକ୍ତ ?
( ୪ ) ଏହି ପ୍ରଦେଶରେ କ କ ଜାତିର ଲୋକ ଅଛନ୍ତି ?
( ୫ ) ଓଡ଼ିଶା ମାନଚିତ୍ର ଅଙ୍କନକରି କଟକ, ବାରିପଦା, ଭୁବନେଶ୍ୱର, ଚିଲିକା, କଟଣି, ବରଗଡ଼, ଦଶପଲ୍ଲା, ବାଲେଶ୍ୱର, ମହାନଦୀ, ମେଘାସନ ପ୍ରଭୃତି ସ୍ଥାନ ନିର୍ଦ୍ଦେଶକର ।



## କଟକ ଜିଲା ।

### ୧ । ଉଲଫ୍ ।

କଟକ ଜିଲ୍ଲାର ଆକାର ପ୍ରାୟ ସମାନ୍ତର ଚତୁର୍ଭୁଜପରି । ଏହାର ଉତ୍ତରରେ ବୈତରଣୀ ନଦୀ, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ପୁରୀଜିଲ୍ଲା ଓ ପଶ୍ଚିମରେ ଗଡ଼ଜାତ । ଏହାର କ୍ଷେତ୍ରଫଳ ୩୬୫୪ ବର୍ଗମାଇଲ । ପଶ୍ଚିମାଂଶ ପର୍ବତ ଓ ଅରଣ୍ୟମୟ । ଏହାର ପଶ୍ଚିମ-ଭାଗକୁ ପାର୍ବତୀୟ ପ୍ରଦେଶ; ପୂର୍ବଭାଗକୁ ଉପକୂଳ ପ୍ରଦେଶ ଓ ମଧ୍ୟଭାଗକୁ ସମତଳ ପ୍ରଦେଶ କହନ୍ତି । ଭୂମି ପଶ୍ଚିମରୁ ପୂର୍ବଆଡ଼କୁ ଢାଲୁ ।

### ୨ । ନଦୀ ।

ଏହି ଜିଲ୍ଲାର ସମସ୍ତ ନଦୀ ପଶ୍ଚିମରୁ ପୂର୍ବଆଡ଼କୁ ବହୁଅଛନ୍ତି । ମହାନଦୀ ଓଡ଼ିଶାର ବୃହତ୍ତମ ନଦୀ । ଏହା ମଧ୍ୟପ୍ରଦେଶସ୍ଥ ରାୟପୁର ଜିଲ୍ଲାରୁ ବାହାରି ସମ୍ବଲପୁର, ସୋନପୁର, ବୌଦ, ଆଠମଲ୍ଲିକ, ଦଶପଲ୍ଲା, ନରସିଂହପୁର, ବଡ଼ମ୍ବା ଓ କଟକ ଜିଲ୍ଲା ଦେଇ ବଛଘରଠାରେ ବଙ୍ଗୋପସାଗରରେ ପଡ଼ିଅଛି । କଠଯୋଡ଼ି, ବିରୂପା, ଲୁଣୀ, ପାଇକା ଏହାର ପ୍ରଧାନ ଶାଖାନଦୀ ଓ ତେଲ, ଜମାଇ, ଇବ, ମେହ୍ୱରଣୀ, ସାଲୁଙ୍କୀ, ବାଘନଦୀ, ପ୍ରଧାନ ଉପନଦୀ ଅଟେ । ଏହା କୂଳରେ ସମ୍ବଲପୁର, ବୌଦ, କଣ୍ଟିଲୋ, ପଦ୍ମାବତୀ, ବୈଦ୍ୟେଶ୍ୱର, ଚଉଦ୍ୱାର ଓ କଟକ ଅବସ୍ଥିତ । କଟକଠାରୁ ସମ୍ବଲପୁର ପର୍ଯ୍ୟନ୍ତ ନୌକା ଯିବାଆସିବା କରେ । ବ୍ରାହ୍ମଣୀ ଛୋଟନାଗପୁରର ଲୋହାରଡାଗାଜିଲ୍ଲାରୁ ବାହାରି ବଣେଇ, ବାମଣ୍ଡା, ତାଳଚେର, ଢେଙ୍କାନାଳ ଓ କଟକଜିଲ୍ଲା ଦେଇ ଧାମରାମୁହାଣଠାରେ

ବଙ୍ଗୋପସାଗରରେ ପଡ଼ିଅଛି । ଇଙ୍ଗର ପ୍ରଧାନ ଉପନଦୀ; ପାଟୁଆ ଓ ଖରସୁଆ ପ୍ରଧାନ ଶାଖାନଦୀ । ତାଲଚେର; ସେନାପୁର, ଧର୍ମଶାଳା, ପତ୍ନାମୁଣ୍ଡାଇ ଏହା କୂଳସ୍ଥ ପ୍ରଧାନ ନଗର । ଏହା ସୁନାବ୍ୟ ଅଟେ । ବୈତରଣୀ କେନ୍ଦୁଝରର ଗୋନାଶିକା ପର୍ବତରୁ ବାହାରି ମୟୂରଭଞ୍ଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାର ଦକ୍ଷିଣ ଦେଇ ଧାମରା ବନ୍ଦରର ନିକଟ ଉପରେ ବ୍ରାହ୍ମଣୀ ସଙ୍ଗେ ମିଶିଅଛି । ଖଇରା, ଭଣ୍ଡନା, ମୂଷଲ, ସାଲନ୍ଦୀ ଓ ମତେଇ ପ୍ରଧାନ ଉପନଦୀ । ସାଲନ୍ଦୀ ମେଘାସନ ପର୍ବତରୁ ବାହାରି ଭଦ୍ରଖ ଦେଇ ବୈତରଣୀ ସଙ୍ଗେ ମିଶିଅଛି । ଚାନ୍ଦବାଲି, ଭଦ୍ରକ, ଏହା କୂଳରେ ଅଛି । ଆନନ୍ଦପୁର, ଯାଜପୁର, ଓ ଚାନ୍ଦବାଲି ବୈତରଣୀ କୂଳରେ ଅବସ୍ଥିତ । ବୃଦ୍ଧାନଈ ଖରସ୍ରୋତରେ ଶୁଖିଯାଏ ।

### ୩ । ବର୍ଷା ।

ଜୁଲାଇ ଓ ଅଗଷ୍ଟ ମାସରେ ବେଶି ବର୍ଷା ହୁଏ । ବର୍ଷ ମଧ୍ୟରେ ହାରାହାରି ବୃଷ୍ଟି ପରିମାଣ ୬୦ ଇଞ୍ଚ । ମେ ମାସରେ ୪, ଜୁନରେ ୧୦, ଜୁଲାଇରେ ୧୧, ଅଗଷ୍ଟରେ ୧୨, ସେପ୍ଟେମ୍ବରରେ ୧୦ ଓ ଅକ୍ଟୋବରରେ ୫ ଇଞ୍ଚ ବୃଷ୍ଟି ହୁଏ ।

### ୪ । ଜଳବାୟୁ ।

ଗ୍ରୀଷ୍ମକାଳରେ ଅଧିକ ଗ୍ରୀଷ୍ମ ଓ ଶୀତକାଳରେ ଅଧିକ ଶୀତ ହୁଏ । ମାର୍ଚ୍ଚରୁ ମେ ପର୍ଯ୍ୟନ୍ତ ଗ୍ରୀଷ୍ମକାଳ; ଜୁନରୁ ଅକ୍ଟୋବର ପର୍ଯ୍ୟନ୍ତ ବର୍ଷାକାଳ ଓ ନଭେମ୍ବରରୁ ଫେବୃୟାରୀ ପର୍ଯ୍ୟନ୍ତ ଶୀତକାଳ । ଉତ୍ତାପର ପରିମାଣ ଫେବୃୟାରୀରେ ୬୯ ଡିଗ୍ରୀ ଓ ଜୁନରେ ୮୩ ଡିଗ୍ରୀ ଅଟେ । ବାୟୁରେ ୮୩ ଡିଗ୍ରୀ ଜଳୀୟବାଷ୍ପ ଥାଏ ।

୫ । ଶସ୍ୟ ।

ଏହି ଜିଲ୍ଲାର ଭୂମି ତିନିଭାଗରେ ବିଭକ୍ତ । ଯଥା (୧) ଉପକୂଳସ୍ଥ ନିମ୍ନଭୂମି (୨) ପାର୍ବତୀୟ ଭୂମି (୩) ସମତଳ ଭୂମି । ପ୍ରଥମ ପ୍ରକାର ଭୂମି କଠିନ ଓ ମଟାଳ । ଏହାର କେତେକ ଅଂଶରେ ସମୁଦ୍ରର ଲୁଣୀଜଳ ଧାନ ଫସଲକୁ ସମ୍ପୂର୍ଣ୍ଣ ନଷ୍ଟ କରିଦିଏ । ବାକି ଅଂଶରେ ପ୍ରଚୁର ଧାନ ହୁଏ । ଦ୍ୱିତୀୟ ପ୍ରକାର ଭୂମି ପ୍ରସ୍ତରମୟ । ସେଥିରେ କୌଣସି ପ୍ରକାର ଫସଲ ହୁଏ ନାହିଁ । କେବଳ ପର୍ବତମଧ୍ୟସ୍ଥ ସଂକୀର୍ଣ୍ଣଭୂମିରେ ଶସ୍ୟାଦି ଜନ୍ମେ । ତୃତୀୟ ପ୍ରକାର ଭୂମି ମଧ୍ୟରୁ ସମତଳ ଭୂମିରେ ଅନେକ ଦିନଯାଏ ଜଳ ଜମା ହୋଇ ରହେ । ଧାନ୍ୟ ପ୍ରଧାନ ଶସ୍ୟ । ଗ୍ରାମ ପାର୍ଶ୍ୱସ୍ଥ ଉଚ୍ଚ ଭୂମିର ମୃତ୍ତିକା କୃଷ୍ଣବର୍ଣ୍ଣ । ଏଥିରେ ଧାନ, ଶାକସବଜି, ତୁଳା, ଝୋଟ ଓ ଅନ୍ୟାନ୍ୟ ପଦାର୍ଥ ଜନ୍ମେ । ନଦୀକୂଳସ୍ଥ ଭୂମି ପଙ୍କମୟ । ଏଥିରେ ସୋରିଷ, ତୁଳା, ଧୂଆଁପତ୍ର ଓ ରବି ଫସଲ ଜନ୍ମେ ।

୬ । ପଶୁ ।

ଏହିଜିଲ୍ଲାରେ ବାଘ, ଚିତାବାଘ, ଭାଲୁ, ହରିଣ, ଶୂକର ବିଲୁଆ, କୋକିଶିଆଳି ପ୍ରଭୃତି ବନ୍ୟଜନ୍ତୁ ଦେଖାଯାନ୍ତି । ଉପକୂଳ ଓ ପାର୍ବତୀୟ ପ୍ରଦେଶରେ ଗୋଚର ଭୂମି ଅଧିକ ଥିବାରୁ ପାଳିତ ଗୋମେଷାଦି ସଂଖ୍ୟା ଅଧିକ ଦେଖାଯାଏ । ଏ ଅଞ୍ଚଳର ପଶୁମାନେ ମଧ୍ୟ ସବଳ ହୁଅନ୍ତି । ମେଣ୍ଢା ପ୍ରାୟ ସବୁ ଅଞ୍ଚଳରେ ପୋଷା ଯିବାର ଦେଖାଯାଏ ।

୭ । ସ୍ଥଳ ଓ ଜଳପଥ ।

(୧) କଲିକତାରୁ ଗଞ୍ଜାମପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶା ଟ୍ରଙ୍କରୋଡ଼ (୨) କଟକ ପୁରୀ ରୋଡ଼ (୩) କଟକ ତାଳଦଣ୍ଡା ରୋଡ଼ (୪) କଟକ ମାଛଗାଁ ରୋଡ଼ (୫) କଟକ ଚାନ୍ଦବାଲି ରୋଡ଼ (୬) ଫୁଲନାଖରା ମାଧବ ରୋଡ଼ (୭) କଟକ ସମ୍ବଲପୁର ରୋଡ଼ ବେଙ୍ଗଲ ନାଗପୁର ରେଲଓ୍ୱେ ବୈତରଣୀରୋଡ଼ ଷ୍ଟେସନଠାରେ

କଟକ ଜିଲ୍ଲାରେ ପ୍ରବେଶ କରି ଯାଜପୁରରୋଡ଼, ନେକାପୁର, ଶଡ଼ମଧୁପୁର, ହରିଦାସପୁର, ଧାନମଣ୍ଡଳ, ବଇଶ୍ରୀ, କପିଳାସ ରୋଡ଼, ଜଗତପୁର, କଟକ, ବାରଙ୍ଗ ଦେଇ ମହେଶ୍ୱର ଷ୍ଟେସନ ପର୍ଯ୍ୟନ୍ତ ଆସିଅଛି । ଯାଜପୁରରୋଡ଼ ଷ୍ଟେସନରୁ ଯାଜପୁର ଆଉନ ପର୍ଯ୍ୟନ୍ତ, ଜଗତପୁରରୁ କେନ୍ଦ୍ରାପଡ଼ା ପର୍ଯ୍ୟନ୍ତ, କଟକରୁ ବାଙ୍କି ପର୍ଯ୍ୟନ୍ତ ଓ କଟକରୁ ଜଗତସିଂହପୁର ପର୍ଯ୍ୟନ୍ତ ମଟର ଯିବାଆସିବା କରେ । ଜଗତପୁର ଓ କପିଳାସରୋଡ଼ର ମଧ୍ୟସ୍ଥିତ ନର୍ଗୁଣ୍ଡୀ ନାମକ ସ୍ଥାନରୁ ତାଳଚେର ରେଲୱେ ନାମକ ଗୋଟିଏ ଶାଖାଲାଇନ ତାଳଚେର ପର୍ଯ୍ୟନ୍ତ ଯାଇଅଛି । ମହାନଦୀ ଓ ବ୍ରାହ୍ମଣୀ ଜିଲ୍ଲାର ଦୁଇଗୋଟି ପ୍ରଧାନ ସୁନାବ୍ୟ ଜଳପଥ । ଏହା ବ୍ୟତୀତ ଛୋଟ ନଦୀମାନଙ୍କରେ ବର୍ଷାକାଳରେ ନୌକା ଚଳେ । ତାଳଦଣ୍ଡା, କେନ୍ଦ୍ରାପଡ଼ା, ଜୋବ୍ରା ହାଇଲେଭଲ ଓ ଯାଜପୁର କେନାଲରେ ଛୋଟ ଛୋଟ ବୋଟ ଯିବାଆସିବା କରେ ।

## ୮ । ଜାତି ଓ ଭାଷା ।

ଏହି ଜିଲ୍ଲାର ଲୋକସଂଖ୍ୟା ୨୦୬୪୬୨୮ ଜଣ ମଧ୍ୟରୁ ଶତକଡ଼ା ୯୬.୭ ଜଣ ହିନ୍ଦୁ ଓ ୩.୧ ଜଣ ମୁସଲମାନ । ୨୪୯୬ ଜଣ ଖ୍ରୀଷ୍ଟାନ ମଧ୍ୟରୁ ୨୧୮୫ ଦେଶୀୟ ଖ୍ରୀଷ୍ଟାନ । ବ୍ରାହ୍ମଣ ୧୯୧, ଖଣ୍ଡାୟତ ୪୮୨, କୃଷକ ୧୨୯, କଣ୍ଡରା ୮୮, ପାଣ ୯୧, ଓ ଗଉଡ଼ ୧୩୪ ହଜାର । ଏହା ବ୍ୟତୀତ ତନ୍ତି, ଗୁଡ଼ିଆ, କେଉଟ, ଗୋଖା, ଶୁଣ୍ଡି ପ୍ରଭୃତି ନାନାଜାତିର ଲୋକ ଅଛନ୍ତି । ଓଡ଼ିଆ ସାଧାରଣ ଭାଷା । ମୁସଲମାନ ଓ ମାରୁଆଡ଼ିମାନେ ସମୟେ ସମୟେ ଉର୍ଦ୍ଦୁ ଓ ହିନ୍ଦି ଭାଷାରେ କଥା କହନ୍ତି । କେତେକ ଲୋକ ବଙ୍ଗଳା ଓ କେତେକ ଇଂରାଜୀ ଭାଷା ବ୍ୟବହାର କରନ୍ତି ।

## ୯ । ଜୀବିକା ।

ଶତକଡ଼ା ୭୭.୪ ଜଣ ଚାଷ, ୧୩.୪ ଜଣ ଶିଳ୍ପ ଓ ୭.୧ ଜଣ ନିଜ ନିଜର ପେଶାଦ୍ୱାରା ଜୀବିକା ନିର୍ବାହ କରନ୍ତି । କେତେକ ଲୋକ

ଲୁଗା ବୁଣି, କେତେକ ସୁନା ରୂପା ଓ ଜହର ତାରକସି କାମକରି, କେତେକ କଂସା ବାସନ କରି ଓ କେତେକ ଦଉଡ଼ି ଓ ଖେଳନା ପ୍ରସ୍ତୁତ କରି ଚଳନ୍ତି । କେତେକ ବାଣିଜ୍ୟ ବ୍ୟବସାୟଦ୍ୱାରା; କେତେକ ସରକାରୀ ଚାକରି ଦ୍ୱାରା ଓ କେତେକ ପୌରହିତ୍ୟ ଓ ଦେବସେବା ଦ୍ୱାରା ନିଜ ନିଜର ଜୀବିକା ନିର୍ବାହ କରନ୍ତି ।

୧୦ । ସବ୍‌ଡିଭିଜନ ଓ ସଦର ।

(୧) କଟକ ସବ୍‌ଡିଭିଜନର ଉତ୍ତରରେ ଯାଜପୁର ଓ କେନ୍ଦ୍ରାପଡ଼ା ସବ୍‌ଡିଭିଜନ, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ପୁରୀ ଜିଲ୍ଲା ଓ ପଶ୍ଚିମରେ ଓଡ଼ିଶାର କରଦ ରାଜ୍ୟ ଅବସ୍ଥିତ । ଏହା ଜିଲ୍ଲାର ସଦର ସବ୍‌ଡିଭିଜନ । କ୍ଷେତ୍ରଫଳ ୧୫୬୨ ବର୍ଗମାଇଲ । ଲୋକସଂଖ୍ୟା ଓ ଗ୍ରାମ ସଂଖ୍ୟା ଯଥାକ୍ରମେ ୧୦୪୩୩୦୧ ଓ ୨୬୩୯ ଅଟେ । ଏହି ଜିଲାରେ କଟକ, ବାଙ୍କି, ସାଲେପୁର, ଜଗତସିଂହପୁର, ତିର୍ତ୍ତୋଲ, ଏହି ପାଞ୍ଚଗୋଟି ଥାନା ଅଛି । କଟକ ଓଡ଼ିଶାର ରାଜଧାନୀ । ଏହା ସୁନାରୂପା ଓ ଜହର ତାରକସି କାମ ନିମନ୍ତେ ବିଖ୍ୟାତ । ଏଠାରେ ସରକାରଙ୍କ କଚେରୀ, କଲିଜିଏଟ ସ୍କୁଲ ଟ୍ରେନିଂସ୍କୁଲ, ରେଭେନ୍‌ସା କଲେଜ, ରେଭେନ୍‌ସା ବାଳିକା ସ୍କୁଲ, ଡ୍ରାଇଂ ସ୍କୁଲ, ଇଞ୍ଜିନିଅରିଙ୍ଗ ସ୍କୁଲ ଅଛି । ଜେଲଖାନା ଓ ମହାନଦୀ ଅନିକଟ ଦର୍ଶନୀୟ ସ୍ଥାନ । ଏଠାର ବାରବାଟୀ ଦୁର୍ଗ ଓ କାଠଯୋଡ଼ି ପଥରବନ୍ଧ ପୂର୍ବ ହିନ୍ଦୁରାଜାଙ୍କର କୀର୍ତ୍ତି ଅଟେ । ନରାଜ ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନ । ଧବଳେଶ୍ୱରରେ ଧବଳେଶ୍ୱର ଦେବଙ୍କର ମନ୍ଦିର ଅଛି । କାର୍ତ୍ତିକ ପୂର୍ଣ୍ଣିମାଦିନ ଏଠାକୁ ବହୁତ ଯାତ୍ରୀ ଆସନ୍ତି । ବାଙ୍କିରେ ଚର୍ଚ୍ଚିକା ଦେବୀଙ୍କର ମନ୍ଦିର ଅଛି । ବାଙ୍କିର ପୂର୍ବରାଜାଙ୍କର ନରହତ୍ୟା ଅପରାଧରେ ରାଜ୍ୟ ଖାସ ହୋଇ ସରକାରଙ୍କ ଖାସମହାଲ ହୋଇଅଛି । ଝଙ୍କଡ଼ରେ ଶାରଳା ଠାକୁରାଣୀଙ୍କ ମନ୍ଦିର ଅଛି । ଛତିଆରେ ଗୋଟିଏ ଭଗ୍ନ ଦୁର୍ଗ ଅଛି ।

(୨) କେନ୍ଦ୍ରାପଡ଼ା ସଃ ଡ଼ିଃ ର ଉତ୍ତରରେ ବାଲେଶ୍ୱର ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ କଟକ ସଃ ଡ଼ିଃ, ପଶ୍ଚିମରେ କଟକ ଓ ଯାଜପୁର ସଃ ଡ଼ିଃ । ଏହାର କ୍ଷେତ୍ରଫଳ ୯୭୭ ବର୍ଗମାଇଲ, ଲୋକସଂଖ୍ୟା ଓ ଗ୍ରାମସଂଖ୍ୟା ଯଥାକ୍ରମେ ୪୭୮୭୭୩ ଓ ୧୩୭୫ ଅଟେ । ଏଠାରେ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ, ଅଲୀ ଏହି ତିନଗୋଟି ଥାନା ଅଛି । କେନ୍ଦ୍ରାପଡ଼ାରେ ବଳଦେବଙ୍କ ମନ୍ଦିର, କଚେରୀ, ହାଇସ୍କୁଲ, ଡାକ୍ତରଖାନା ଅଛି । ଅଲୀରେ ଜଣେ ରାଜା ଅଛନ୍ତି । ଧାନଚାଉଳ, ଫଳସଫେଣ୍ଡ, ପାଲମିରା ପ୍ରଧାନ ବନ୍ଦର ।

(୩) ଯାଜପୁର ସଃ ଡ଼ିଃ—ଉତ୍ତରରେ ଗଡ଼ଜାତ ଓ ବାଲେଶ୍ୱର ଜିଲ୍ଲା, ପୂର୍ବରେ କେନ୍ଦ୍ରାପଡ଼ା ସଃ ଡ଼ିଃ, ଦକ୍ଷିଣରେ କେନ୍ଦ୍ରାପଡ଼ା ଓ କଟକ ସଃ ଡ଼ିଃ ଓ ପଶ୍ଚିମରେ ଗଡ଼ଜାତ । ଏହାର କ୍ଷେତ୍ରଫଳ ୧୧୧୫ ବର୍ଗମାଇଲ, ଲୋକସଂଖ୍ୟା ୫୪୨୭୦୪ ଓ ଗ୍ରାମସଂଖ୍ୟା ୧୭୧୫ ଅଟେ । ଏହାର ଯାଜପୁର, ଧର୍ମଶାଳା ନାମକ ଦୁଇଗୋଟି ଥାନା ଅଛି । ଯାଜପୁର ପୂର୍ବେ କେଶରୀ ବଂଶୀୟ ରାଜାଙ୍କର ରାଜଧାନୀ ଥିଲା । ଏହା ଗୋଟିଏ ତୀର୍ଥସ୍ଥାନ । ଏଠାରେ ଦଶାଶ୍ୱମେଧଘାଟ, ବରାହନାଥ ମନ୍ଦିର, ସପ୍ତମାତୃକା, ବିରଜା ମନ୍ଦିର, ନାଭିଗୟା ଓ ଶୁଭସ୍ତମ୍ଭ ଅଛି । ଅନ୍ତର ମଧ୍ୟ ଏଠାରେ ସରକାରୀ କଚେରୀ, ହାଇସ୍କୁଲ ଓ ଡାକ୍ତରଖାନା ଅଛି । ଯାତ୍ରୀମାନଙ୍କ ପାଇଁ ଧର୍ମଶାଳ ଅଛି । ଛତିଆ ଗଞ୍ଜାବାଟ୍ରନ ନାମରେ ବିଖ୍ୟାତ । ମହାବିନାୟକଙ୍କୁ ଗଣେଶ କ୍ଷେତ୍ର କହନ୍ତି । ଏଠାରେ ଗୋଟିଏ ଦେବମନ୍ଦିର ଓ ନର୍ଝର ଅଛି । ବଣ୍ଡାଘର ଗୋଟିଏ ବନ୍ଦର ।

## ୧୧ । ଶାସନ ପ୍ରଣାଳୀ ।

ଏହି ଜିଲ୍ଲାର ଶାସନ ପ୍ରଣାଳୀ ବାଲେଶ୍ୱରଜିଲ୍ଲାର ଶାସନ ପ୍ରଣାଳୀ ପରି । କନିକା, କୁଜଙ୍ଗ ଓ ଅଳରେ ଜଣ ଜଣେ ରାଜା ଶାସନ କରନ୍ତି ।

୧୨ । ଆଦର୍ଶ ପ୍ରଶ୍ନାବଳୀ ।

୧ ।—କଟକ ଜିଲ୍ଲା କ କ ସବ୍‌ଡିଭିଜନରେ ବିଭକ୍ତ ଓ ପ୍ରତ୍ୟେକ ସବ୍‌ଡିଭିଜନରେ କ କ ଥାନା ଅଛି ?

୨ ।—ମହାନଦୀର ଗତିପଥ ବର୍ଣ୍ଣନା କର ଓ କୂଳସ୍ଥିତ ଗ୍ରାମ ଓ ନଗରମାନଙ୍କର ନାମ କହ ।

୩ ।—କଟକରୁ ଯାଜପୁର ଯିବାକୁ ହେଲେ କେଉଁ କେଉଁ ରେଲ ଷ୍ଟେସନ ଅତିକ୍ରମ କରିଯିବ ।

୪ ।—ଏହି ଜିଲ୍ଲାର ଉପକୂଳ ପ୍ରଦେଶର ଲୋକେ କପରି ଜୀବିକା ନିର୍ବାହ କରନ୍ତି ?

୫ ।—ତୁମ୍ଭ ନିଜ ସବ୍‌ଡିଭିଜନର ମାନଚିତ୍ର ଅଙ୍କନ କର ।

---

## ପୁରୀଜିଲା ।

### ୧ । ସ୍ୱରୂପ ।

ପୁରୀ ଜିଲ୍ଲାର ଉତ୍ତରରେ କଟକ ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ଚିଲିକାହ୍ରଦ ଓ ଗଞ୍ଜାମ ଜିଲ୍ଲା ଏବଂ ପଶ୍ଚିମରେ ରଣପୁର, ନୟାଗଡ଼, ଖଣ୍ଡପଡ଼ା ରାଜ୍ୟ । ଏହା ତ୍ରିଭୁଜାକାର । କ୍ଷେତ୍ରଫଳ ୨୪୯୯ ବର୍ଗମାଇଲ । ଲୋକସଂଖ୍ୟା ୯୫୧୬୫୧ ଜଣ । ସମୁଦ୍ର ଏହି ଜିଲ୍ଲାର ଅନେକ ଅଂଶକୁ ଲାଗିଅଛି । ଏହା ଦୁଇ ପ୍ରଧାନ ଅଂଶରେ ବିଭକ୍ତ । ଯଥା—ସମତଳ ଅଂଶ ଓ ପାର୍ବତ୍ୟ ଅଂଶ । ଖୋରଧା ସବଡିଭିଜନର ଭୂମି ଉତ୍ତରରୁ ଦକ୍ଷିଣ ଆଡ଼କୁ ଢାଲୁ । ମଧ୍ୟ ଅଂଶର ଭୂମି ଉତ୍ତର ପୂର୍ବରୁ ଦକ୍ଷିଣ ଆଡ଼କୁ ଢାଲୁ, ଉତ୍ତର ପୂର୍ବର ଭୂମି ପଶ୍ଚିମରୁ ପୂର୍ବ ଆଡ଼କୁ ଢାଲୁ । ଖଣ୍ଡଗିରି, ଉଦୟଗିରି, ଧଉଳୀଗିରି ଓ ବରୁଣୀ ଏହି ଜିଲ୍ଲାର ପ୍ରଧାନ ପାହାଡ଼ । ବାଲେଶ୍ୱର, ବେଲୋରୀ ପର୍ବତ ଚିଲିକାହ୍ରଦର ଅନ୍ତର୍ଗତ ।

## ୨ । ନଦୀ ।

ଏହି ଜିଲ୍ଲା ଯେଉଁ ଯେଉଁ ଦଗକୁ ଢାଲୁ; ନଦୀମାନେ ମଧ୍ୟ ସେହି ସେହି ଦଗକୁ ପ୍ରବାହିତ । ବର୍ଷାଋତୁଭିନ୍ନ ଅନ୍ୟ ସମୟରେ ନଦୀଗୁଡ଼ିକ ମଧ୍ୟ ଶୀର୍ଣ୍ଣରୂପେ ଶୁଖିଯାଏ । କୁଆଖାଇ କଣ୍ଟବଠାରେ କାଠଯୋଡ଼ିରୁ ବାହାରି ବାଲିଅନ୍ତାଠାରେ ଦୁଇଭାଗରେ ବିଭକ୍ତ ହୋଇ ଏକଭାଗ କୁଶଭଦ୍ରା ନାମ ଧାରଣକରି ବଙ୍ଗୋପସାଗରରେ ପଡ଼ିଅଛି । ଏହାର ଦୈର୍ଘ୍ୟ ପ୍ରାୟ ୪୦ ମାଇଲ । ଅପର ଭାଗଟି ବାଲକାଟିଠାରେ ଭାର୍ଗବୀ ଓ ଦୟା ଏହି ଦୁଇନାମ ଧାରଣ କରି ଦୁହେଁ ଚିଲିକାହ୍ରଦରେ ପଡ଼ିଅଛନ୍ତି । ଗଙ୍ଗୁଆ ପଟିଆ ଦଦରୁ ବାହାରି ଦୟା ସଙ୍ଗେ ମିଶିଅଛି । ମୋନାଗୁଣୀ ଦୟାର ଅନ୍ୟ ଏକ ଉପନଦୀ । ପ୍ରାଚୀ, କଦୁଆ, ଦେବୀ ଏହି ଜିଲାର ଅନଂଭଜନଗୋଟ ନଦୀ । ପ୍ରାଚୀ ୩୦ ମାଇଲ ଯାଇ କାଦୁଆ ସଙ୍ଗେ ମିଶି ସମୁଦ୍ରରେ ପଡ଼ିଅଛି । ଦେବୀନଦୀ ମଧ୍ୟ ସମୁଦ୍ରରେ ପଡ଼ିଅଛି, ସାଳିଆ ରଣପୁର ରାଜ୍ୟରୁ ବାହାରି ୩୦ ମାଇଲ ବହିବା ପରେ ଚିଲିକାହ୍ରଦରେ ପଡ଼ିଅଛି । ଭୁସୁମୀ ଚିଲିକାହ୍ରଦରେ ପଡ଼ିଅଛି ।

## ୩ । ବର୍ଷା ।

ଜୁଲାଇ, ଅଗଷ୍ଟ ଓ ସେପ୍ଟେମ୍ବରମାସରେ ବେଶି ବର୍ଷା ହୁଏ । ବାର୍ଷିକ ବୃଷ୍ଟିପରିମାଣ ହାରାହାରି ୫୮ ଇଞ୍ଚ । ତନ୍ମଧ୍ୟରୁ ଜୁନରେ ୮.୫, ଜୁଲାଇରେ ୧୧, ଅଗଷ୍ଟରେ ୧୨ ଓ ସେପ୍ଟେମ୍ବରରେ ୧୧ ଇଞ୍ଚ । ଅକ୍ଟୋବର ଓ ମେ ମାସରେ ଅଳ୍ପ ବୃଷ୍ଟି ହୁଏ । ଜିଲାର ସମସ୍ତ ଅଂଶରେ ସମପରିମାଣରେ ବୃଷ୍ଟି ହୁଏ ନାହିଁ ।

## ୪ । ଜଳବାୟୁ ।

ପୁରୀର ଜଳବାୟୁ ଅତି ଭଲ ଓ ସ୍ୱାସ୍ଥ୍ୟକର । ପୁରୀଜିଲ୍ଲା ସମୁଦ୍ରକୂଳବର୍ତ୍ତୀ ଥିବାରୁ ସର୍ବଦା ସମପରିମାଣରେ ଗ୍ରୀଷ୍ମ ଅନୁଭୂତ ହୁଏ । ଗ୍ରୀଷ୍ମକାଳରେ ସମୁଦ୍ରରୁ ଶୀତଳ ଓ ସ୍ୱାସ୍ଥ୍ୟକର ବାୟୁ ବହେ ତେଣୁ

ଅନ୍ୟାନ୍ୟ ଜିଲ୍ଲା ପରି ଲୋକମାନଙ୍କର ପକ୍ଷେ ଅବଶ୍ୟକ ହୁଏ ନାହିଁ ।
ବର୍ଷାକାଳ ପରେ ଜଳବାୟୁ ଭଲ ରହେ ନାହିଁ । ବର୍ଷା ଆରମ୍ଭ ପୂର୍ବରୁ
ଜଳବାୟୁ ଯେପରି ଗରମ ଓ କଷ୍ଟକର ବୋଧହୁଏ, ସମୁଦ୍ର ପବନ
ବନ୍ଦ ହେଲେ ମଧ୍ୟ ସେହିପରି ବୋଧହୁଏ । ଫେବୃୟାରୀ ଓ ମେ
ମାସରେ ଉତ୍ତାପର ପରିମାଣ ୭୨ ଓ ୮୦ ଡିଗ୍ରୀ । ବାର୍ଷିକ ବୃଷ୍ଟି
ପରିମାଣ ୫୮ ଇଞ୍ଚ । ବାୟୁରେ ୮୬ ଡିଗ୍ରୀ ଜଳୀୟବାଷ୍ପ ଥାଏ ।

୫ । ଶସ୍ୟ ।

ଶସ୍ୟ ଉତ୍ପତ୍ତି ଅନୁସାରେ ପୁରୀଜିଲା ଦୁଇ ଅଂଶରେ ବିଭକ୍ତ
( ୧ ) ଦକ୍ଷିଣ ପୂର୍ବାଂଶରେ ସମତଳ ଅଂଶ ( ୨ ) ଉତ୍ତର ପଶ୍ଚିମ-
ଦିଗର ପାର୍ବତ୍ୟ ଅଂଶ । ଉତ୍ତର ପଶ୍ଚିମ ଅଂଶର ଭୂମି ପ୍ରସ୍ତରମୟ
ଓ କୃଷ୍ଣବର୍ଣ୍ଣ । ଦୁଇ ପର୍ବତର ମଧ୍ୟସ୍ଥିତ ଅପ୍ରଶସ୍ତ ଭୂମି ଶାରଦ
ଫସଲର ଉପଯୁକ୍ତ । ଦୟାନଦୀର ଦକ୍ଷିଣ ପୂର୍ବଭାଗରେ ଶାରଦ ଧାନ
ଭଲ ହୁଏ । ପାର୍ବତ୍ୟ ପ୍ରଦେଶର ବୃକ୍ଷଲତାଦିର ପଚା ପତ୍ର ମୃତ୍ତିକାକୁ
ଉର୍ବର କରେ । ଦୟାନଦୀ ଯୋଗୁଁ କେତେକ ଭୂମି କର୍ଦ୍ଦମମୟ ।
ଏହି ଜିଲାର ପୂର୍ବାଞ୍ଚଳ ଭୂମି ବାଲୁକାମୟ; ତେଣୁ ବର୍ଷାଭାବରେ ଶସ୍ୟ
ଭଲ ହୁଏ ନାହିଁ । ଧାନ ଓ ଆଖୁ ମାର୍ଗଶିର ମାସର ଫସଲ । ଏହା
ଶତକଡ଼ା ୭୭ଭାଗ । ବିଆଳିଧାନ ଓ ରାଶି ଭାଦ୍ରବ ମାସରେ ହୁଏ ।
ଏହା ଶତକଡ଼ା ୧୪ଭାଗ । ବୁଟ, ମୁଗ, ତେଲବୀଜ, ଧୂଆଁପତ୍ର ପ୍ରଭୃତି
ରବିଫସଲର ପରିମାଣ ଶତକଡ଼ା ୯ ଭାଗ ।

୬ । ପଶୁ ।

ଏହି ଜିଲାର ପଶ୍ଚିମାଞ୍ଚଳ ଅରଣ୍ୟ ପ୍ରଦେଶରେ ବାଘ, ଭାଲୁ,
ଚିତାବାଘ, ହରିଣ ଓ ବନ୍ୟଶୂକର ଦେଖାଯାନ୍ତି । ସମୟେ ସମୟେ
ବନ୍ୟହସ୍ତୀ ଶସ୍ୟକ୍ଷେତ୍ରମାନ ନଷ୍ଟ କରିବାର ଦେଖାଯାଏ । ଚଷୀଉଡ଼-
ମାନେ ଗାଈ, ମଇଁଷି ପୋଷନ୍ତି । ନୀଚଶ୍ରେଣୀର ଲୋକେ ମେଣ୍ଢା,
ଛେଳି ଓ ଘୁଷୁରି ପାଳନ୍ତି ।

୭ । ସ୍ଥଳ ଓ ଜଳପଥ ।

କଟକରୁ ପୁରୀ ସଡ଼କ, କଟକରୁ ଗଞ୍ଜାମ ସଡ଼କ, ପିପିଲିରୁ ଖୋରଧା ସଡ଼କ, ପଟ୍ଟନାୟକଆରୁ ଖୋରଧା ସଡ଼କ, ଖୋରଧାରୁ ମଧ୍ୟ ପ୍ରଦେଶକୁ ଯାଇଥିବା ସଡ଼କ ଓ ମାଧବରୁ ଗୋପ ସଡ଼କ ଏହି ଜିଲ୍ଲାର ପ୍ରଧାନ ସଡ଼କ । ବେଙ୍ଗଲନାଗପୁର ରେଲଓୟେ ମହେଶ୍ୱର ଷ୍ଟେସନଠାରେ ଏହି ଜିଲ୍ଲାରେ ପ୍ରବେଶ କରି ଭୁବନେଶ୍ୱର, ଖଣ୍ଡଗିରିରୋଡ଼, ଖୋରଧାରୋଡ଼ (ଜଟଣୀ), ଛତ୍ରପୁର, ଡାପଙ୍ଗ, ନିରାକାରପୁର, ଭୁଷଣ୍ଡପୁର, କଲୁପଡ଼ା ଘାଟ, କୁହୁଡ଼ି, ଗଙ୍ଗାଧରପୁର, ପ୍ରାଣଦେଇପୁର ଓ ବାଲୁଗାଁ ପର୍ଯ୍ୟନ୍ତ ଯାଇଅଛି । ଖୋରଧାରୋଡ଼ଠାରୁ ଗୋଟିଏ ଶାଖା ରେଲ ବାହାରି ଡେଲଙ୍ଗ, ସାକ୍ଷୀଗୋପାଳ, ମାଳତିପାଟପୁର ଦେଇ ପୁରୀ ପର୍ଯ୍ୟନ୍ତ ଯାଇଅଛି । ଖୋରଧାରୋଡ଼ଠାରୁ ନୟାଗଡ଼ ପର୍ଯ୍ୟନ୍ତ ମଟର ଯିବା ଆସିବା କରେ । ଦୟା, ଭାର୍ଗବୀ ଓ କୁଶଭଦ୍ରାରେ ଛୋଟ ଛୋଟ ନୌକା ଚଳେ । ନୌକା ସାହାଯ୍ୟରେ ଲୋକେ ନଦୀ ପାର ହୁଅନ୍ତି ।

୮ । ଲୋକସଂଖ୍ୟା ଓ ଭାଷା ।

ଏହି ଜିଲ୍ଲାର ଲୋକସଂଖ୍ୟା ୯୫୧୬୫୧ ମଧ୍ୟରୁ ଶତକଡ଼ା ୯୬.୭ ଜଣ ହିନ୍ଦୁ ଓ ୨ ଜଣ ମୁସଲମାନ । ହିନ୍ଦୁମାନଙ୍କ ମଧ୍ୟରୁ ୨୬୯ ହଜାର ଜଣ କୃଷକ, ୯୮ ହଜାର ବ୍ରାହ୍ମଣ ୭୪ ହଜାର ବାଉରି, ୪୪ ହଜାର ଗଉଡ଼, ୩୧ ହଜାର କରଣ, ୩୦ ହଜାର କେଉଟ ଏବଂ ୨୩ ହଜାର ଗୁଡ଼ିଆ ଅଟନ୍ତି । ଓଡ଼ିଆ ଭାଷା ସର୍ବତ୍ର ପ୍ରଚଳିତ । ବଙ୍ଗଦେଶରୁ ଆଗତ ବଙ୍ଗାଳିମାନେ ବଙ୍ଗଳାଭାଷା ବ୍ୟବହାର କରନ୍ତି ।

୯ । ଜୀବିକା ।

ଏହି ଜିଲ୍ଲାର ଲୋକମାନଙ୍କ ମଧ୍ୟରୁ ଶତକଡ଼ା ୬୫ ଜଣ କୃଷି, ୧୨ ଜଣ ଶିଳ୍ପ, ୯ ଜଣ ବାଣିଜ୍ୟ, ବ୍ୟବସାୟ ଓ ୩୩ ଜଣ ବିବିଧ

ଧରି ଚଳନ୍ତି । ରଥଯାତ୍ରାର ଲୋକେ ବଂଶାବାସନ ଓ ପୁଷ୍ପର ଲୋଚକ ମୂର୍ତ୍ତି ନିର୍ମାଣ କରି ଚଳନ୍ତି । ସମୁଦ୍ର ଓ ଚିଲିକା କୂଳର କୋଳିଅମାନେ ମାଛ ଧରି ନିଜ ନିଜର ଜୀବିକା ନିର୍ବାହ କରନ୍ତି । କେତେକ ଲୋକେ ତସର ଓ ସୂତାଲୁଗା ବୁଣି ଜୀବିକା ଚଳାନ୍ତି । ପୁରୀ, ଭୁବନେଶ୍ୱର ଓ ସତ୍ୟବାଦୀର ଲୋକମାନେ ଦେବସେବାକରି ଚଳନ୍ତି । କେତେକ ଲୋକ ଜଙ୍ଗଲରୁ କାଠ ଆଣି ଓ ମୂଲଲାଗି ଚଳନ୍ତି ।

୧୦ । ସବ୍‌ଡିଭିଜନ ଓ ସହର ।

(୧) ପୁରୀ ସବଡ଼ିଭିଜନର ଉତ୍ତରରେ କଟକ ଜିଲ୍ଲା, ପୂର୍ବରେ ବଙ୍ଗୋପସାଗର, ଦକ୍ଷିଣରେ ବଙ୍ଗୋପସାଗର ଓ ଗଞ୍ଜାମ ଜିଲ୍ଲା ଏବଂ ପଶ୍ଚିମରେ ଖୋରଧା ସ: ଡ଼: ଏହାର କ୍ଷେତ୍ରଫଳ ୧୫୬୧ ବର୍ଗମାଇଲ ଏବଂ ଲୋକ ଓ ଗ୍ରାମ ସଂଖ୍ୟା ୬୧୪୬୫୪ ଓ ୧୮୮୩ ଅଟେ । ପୁରୀରେ ଜଗନ୍ନାଥଙ୍କ ମନ୍ଦିର ଅଛି, ଏହା ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥ ସ୍ଥାନ । ଏଠାକୁ ରଥଯାତ୍ରା ସମୟରେ ଭାରତର ନାନା ସ୍ଥାନରୁ ଯାତ୍ରି ଆସନ୍ତି । ଏଠାରେ ସରକାରଙ୍କର ଗୋଟିଏ କଚେରୀ, ହାଇସ୍କୁଲ, ସଂସ୍କୃତ କଲେଜ, ଖଜଣାଖାନା, ଜେଲଖାନା ଓ ଡାକ୍ତରଖାନା ଅଛି । ବିହାର ଓଡ଼ିଶା ସରକାରଙ୍କର ଏଠାରେ ଗୋଟିଏ ସ୍ୱାସ୍ଥ୍ୟନିବାସ ଅଛି । ସତ୍ୟବାଦୀର ଅନ୍ୟ ନାମ ସାକ୍ଷୀଗୋପାଳ । ଏଠାରେ ସାକ୍ଷୀଗୋପୀନାଥଙ୍କ ମନ୍ଦିର ଅଛି । ବୀରନରସିଂହପୁର ଓ ବୀରରାମଚନ୍ଦ୍ରପୁର ପ୍ରଧାନ ବ୍ରାହ୍ମଣ ଶାସନ । ପିପିଲିର ସିଲାଇକାର୍ଯ୍ୟ ଓଡ଼ିଶାରେ ପ୍ରସିଦ୍ଧ । କାକଟପୁରରେ ମଙ୍ଗଳା ଅଛନ୍ତି । କୋଣାର୍କରେ ସୂର୍ଯ୍ୟମନ୍ଦିରର ଭଗ୍ନାବଶେଷ ଅଛି । ଖଣ୍ଡିଏ ମୁଗୁନି ପ୍ରସ୍ତରରେ ଖୋଦିତ ନବଗ୍ରହ ମୂର୍ତ୍ତି ଏହା ନିକଟରେ ଅବସ୍ଥିତ । ଚନ୍ଦ୍ରଭାଗା ତୀର୍ଥରେ ମାଘସପ୍ତମୀ ଦିନ ବହୁଲୋକର ସମାଗମ ହୁଏ । କୁମାପଡ଼ା ଓ ଗୋପୀନାଥପୁର ପ୍ରଧାନ ଜମିଦାରସ୍ଥଳୀ । ମାଣିକପାଟଣାରେ ଜଗନ୍ନାଥଦେବ

ଦେବ କାଷ୍ଠ ଯିବା ସମୟରେ ମାଣିକ୍ଷ ଗଉଡ଼୍ଣୀଠାରେ ମୁଦ୍ଦ ବନ୍ଧାଦେଇ ଦୁଧ ଖାଇଥିଲେ । ବାଲକାଟିରେ ଅନେକ ମହାଜନ ଓ ରଥିଜାମାରେ ଅନେକ ଅଠାରୀ ଅଛନ୍ତି । ମାଲୁଦରେ ଜଣେ ମୁସଲମାନ ଜାଗିରିଦାର ଓ ପାରିକୁଦରେ ଜଣେ ରାଜା ଅଛନ୍ତି । ବନମାଳୀପୁର ପ୍ରଧାନ ହାଟ । ପୁରୀର ୪ କୋଶ ଉତ୍ତରରେ ସରହୁଦ ଅବସ୍ଥିତ ।

( ୨ ) ଖୋରଧା ସବ୍‌ଡିଭିଜନର ଉତ୍ତରରେ କଟକ ଜିଲ୍ଲା, ପୂର୍ବରେ ପୁରୀ ସ: ଡ଼ି:, ଦକ୍ଷିଣରେ ଚିଲିକା ହ୍ରଦ ଓ ପଶ୍ଚିମରେ ରଣପୁର, ନୟାଗଡ଼, ଖଣ୍ଡପଡ଼ା ରାଜ୍ୟ ଅବସ୍ଥିତ । ଏହାର କ୍ଷେତ୍ରଫଳ ୬୭୧ ବର୍ଗ ମାଇଲ, ଲୋକ ଓ ଗ୍ରାମସଂଖ୍ୟା ଯଥାକ୍ରମେ ୩୩୬୮୯୬ ଓ ୧୧୫୭ ଅଟେ । ଖୋରଧାରେ ସରକାରଙ୍କର ଗୋଟିଏ କଚେରୀ, ହାଇସ୍କୁଲ, ଡାକ୍ତରଖାନା ଓ ଜେଲଖାନା ଅଛି । ଏଠାରେ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଅଛି । ଅତ୍ରି ଗ୍ରାମରେ ଗୋଟିଏ ଉଷ୍ଣ ପ୍ରସ୍ରବଣ ଅଛି । ବାଣପୁରରେ ଭଗବତୀ ଓ ଦକ୍ଷପ୍ରଜାପତିଙ୍କ ମନ୍ଦିର ଅଛି । ଏଠାରେ ମଧ୍ୟ ଅନେକ କୁମୁଟି ମହାଜନ ଅଛନ୍ତି । କାଇପଦରରେ ପୀରଙ୍କ ଅସ୍ଥାନ ଅଛି । ଭୂଷଣ୍ଡପୁର, ହାଲୁପଡା ଓ ଟାଙ୍ଗି ପ୍ରଧାନ ବାଣିଜ୍ୟ ସ୍ଥାନ । ଭୁବନେଶ୍ୱରର ପୌରାଣିକ ନାମ ଏକାମ୍ରକାନନ । ଏହା କାରୁକାର୍ଯ୍ୟପୂର୍ଣ୍ଣ ଶିବ-ମନ୍ଦିର ନିମନ୍ତେ ପ୍ରସିଦ୍ଧ । ଖଣ୍ଡଗିରିରେ ବୌଦ୍ଧ ଓ ଜୈନ କୀର୍ତ୍ତି ଅଛି । ଉଦୟଗିରିରେ ରାଣୀହଂସପୁର ନାମକ ଦ୍ୱିତଳ ପ୍ରାସାଦ ବିଦ୍ୟମାନ । ଧଉଳୀ ପାହାଡ଼ରେ ଗଣେଶମୂର୍ତ୍ତି ଅଛି । ନିକଟସ୍ଥ ଅଶ୍ୱସ୍ଥିମା ପାହାଡ଼ରେ ଅଶୋକଙ୍କ ଅନୁଶାସନମାନ ପାଲି-ଭାଷାରେ ଖୋଦିତ ଅଛି । ଦଧିଚୀମୁନି ଦୟାନଦୀକୂଳରେ ତପସ୍ୟା କରୁଥିଲେ । କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଗଙ୍ଗେଶ୍ୱର ଦେବଙ୍କ କୀର୍ତ୍ତି ଅଟେ । ବରୁଣୀପାହାଡ଼ରେ ବରୁଣାଇ ଠାକୁରାଣୀଙ୍କ ମନ୍ଦିର ଅଛି ।

୧୧ । ଶାସନ ପ୍ରଣାଳୀ ।

ଏହି ଜିଲ୍ଲାର ଶାସନ ପ୍ରଣାଳୀ ବାଲେଶ୍ୱର ଜିଲ୍ଲାର ଶାସନ ପ୍ରଣାଳୀ ପରି । ପାରିକୁଦ ଜଣେ ରଜାଙ୍କଦ୍ୱାରା ଶାସିତ ହୁଏ । ପୁରୀ ରାଜାଙ୍କ ଦ୍ୱାରା ଜଗନ୍ନାଥଙ୍କ ମନ୍ଦିର ପରିଚାଳିତ ହୁଏ । ଟେମ୍ପଲ-ପୁଲିସ ନାମରେ କେତେକ ପୁଲିଶ କର୍ମଚାରୀ ଅଛନ୍ତି ।

୧୨ । ଆଦର୍ଶ ପ୍ରଶ୍ନାବଳୀ ।

( ୧ ) ପୁରୀଜିଲ୍ଲାର ଚତୁଃସୀମା କହ ।

( ୨ ) ଭୁବନେଶ୍ୱରରୁ ପୁରୀ ଯିବାର କେତେ ବାଟ ପଥ ଅଛି ? ଓ କେଉଁ ପଥ ନିରାପଦ ? ଏବଂ କାହିଁକି ?

( ୩ ) ବାଲେଶ୍ୱରର ଜଳବାୟୁ ସହିତ ପୁରୀର ଜଳବାୟୁ ତୁଳନା କର ।

( ୪ ) ଚିଲିକା ନିକଟବର୍ତ୍ତୀ ଲୋକେ କିପରି ଜୀବିକା ନିର୍ବାହ କରନ୍ତି ?

( ୫ ) ଏହି ଜିଲ୍ଲାରେ କେଉଁ କେଉଁ ତୀର୍ଥସ୍ଥାନମାନ ଅଛି ?

---

## ସମ୍ବଲପୁର ଜିଲ୍ଲା ।

୧ । ଭୂପରିଚୟ ।

ସମ୍ବଲପୁରଜିଲ୍ଲାର ଉତ୍ତରରେ ସାରଣଗଡ଼ ଓ ଗାଙ୍ଗପୁରରାଜ୍ୟ, ପୂର୍ବରେ ଗାଙ୍ଗପୁର, ବାମଣ୍ଡା ଓ ରେଢାଖୋଲ, ଦକ୍ଷିଣରେ ସୋନପୁର ଓ ପାଟଣା ଏବଂ ପଶ୍ଚିମରେ ରାୟପୁରଜିଲ୍ଲା । ଏହାର ଉତ୍ତର, ପୂର୍ବ ଓ ପଶ୍ଚିମଭାଗ ପର୍ବତ ଓ ଜଙ୍ଗଲମୟ । ମଧ୍ୟ ଓ ଦକ୍ଷିଣଭାଗରେ ବଡ଼ ବଡ଼ ପଡ଼ିଆମାନ ଅଛି । ଭୂମିର ଉଚ୍ଚ ନୀଚ ଅନୁସାରେ ଏହି ଜିଲ୍ଲା ଚାରିଭାଗରେ ବିଭକ୍ତ । ଯଥା ଃ—(୧) ବରଗଡ଼ର ସମତଳଭୂମି (୨) ବୁଢ଼ାସମ୍ବରର ପାର୍ବତ୍ୟ ଅଂଶ (୩) ଅମ୍ବାଭୋନାର ସମତଳଭୂମି ଓ ଲକ୍ଷଣପୁର (୪) ସମ୍ବଲପୁର ସଦର । ଏହି ଜିଲ୍ଲାର ଅଧିକାଂଶ ଭୂମି

ପର । ଭୂମି ପ୍ରାୟ ଉତ୍ତରରୁ ଦକ୍ଷିଣକୁ ଢାଲୁ ।

୨ । ନଦୀ ।

ଏହି ଜିଲ୍ଲାରେ ମହାନଦୀ ପ୍ରାୟ ୯୦ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ଦନ୍ତା, ଜୀରା, ଜୋଙ୍କ, ମାଲଣୀ, ଯୋଡ଼ା, ହରଦ ଓ ଜାମଲି ନଦୀମାନ ମହାନଦୀର ଉପନଦୀ । ଏମାନଙ୍କଦ୍ୱାରା ଜିଲ୍ଲାର ସମସ୍ତ ଜଳ ମହାନଦୀକୁ ଆସୁଅଛି ।

୩ । ବର୍ଷା ଓ ଜଳବାୟୁ ।

ଏହି ଜିଲ୍ଲାର ବାର୍ଷିକ ବୃଷ୍ଟି ପରିମାଣ ୬୧ ଇଞ୍ଚ । ବରଗଡ଼ ସବଡ଼ିଭିଜନରେ ଅଳ୍ପ ମୌସୁମୀବାୟୁ ପ୍ରବାହିତ ହେଉଥିବାରୁ ବୃଷ୍ଟି ପରିମାଣ ମଧ୍ୟ ତଦନୁସାରେ ଅଳ୍ପ । ଜଳବାୟୁ ଥଣ୍ଡା ଓ ସ୍ୱାସ୍ଥ୍ୟକର । ଗ୍ରୀଷ୍ମକାଳରେ ଯେପରି ଦାରୁଣ ଗ୍ରୀଷ୍ମ ହୁଏ ଅନ୍ୟ ସମୟରେ ସେପରି ହୁଏ ନାହିଁ । ଫେବୃୟାରୀ ମାସର ଶେଷ ଅର୍ଦ୍ଧରୁ ଜୁନ ଶେଷ ପର୍ଯ୍ୟନ୍ତ ଗ୍ରୀଷ୍ମକାଳ । ଜୁଲାଇରୁ ଅକ୍ଟୋବର ପର୍ଯ୍ୟନ୍ତ ବର୍ଷାକାଳ । ବେଳେ ବେଳେ ବର୍ଷା ବନ୍ଦ ହୋଇଗଲେ ବେଶି ଗ୍ରୀଷ୍ମ ବୋଧହୁଏ । ନଭେମ୍ବରରୁ ଫେବୃୟାରୀ ମଧ୍ୟଭାଗ ପର୍ଯ୍ୟନ୍ତ ଶୀତକାଳ । ଏ ସମୟରେ ଜଳବାୟୁ ଭଲ ହୁଏ ।

୪ । ଶସ୍ୟ ଓ ପଶୁ ।

ବରଗଡ଼ ସମତଳଭୂମିର ମାଟି ହାଲୁକା ଓ ବାଲିଆ । ଏ ଅଞ୍ଚଳରେ ଦନ୍ତା, ଜୀରା ପ୍ରଭୃତି ନଦୀର ଜଳ ଓ ସମତଳ ଭୂମିରେ ଜମା ହୋଇଥିବା ବୃଷ୍ଟି ଜଳଦ୍ୱାରା ଧାନ୍ୟ ଫସଲ ଭଲହୁଏ । ବୃଢ଼ାସମ୍ବରର ଭୂମି ପାର୍ବତ୍ୟ ଏବଂ ଅଧିବାସୀମାନେ କୃଷିକାର୍ଯ୍ୟରେ ଅପଟୁ ଓ ଅମନଯୋଗୀ ତେଣୁ ଭଲ ଫସଲ ହୁଏ ନାହିଁ ।

ଅମ୍ବାଭୋନା ସମତଳଭୂମିର ମୃତ୍ତିକା ବରଗଡ଼ର ମୃତ୍ତିକା ପରି ଏବଂ ଅତ୍ୟନ୍ତ ଉର୍ବର । ଧାନ ଭଲ ହୁଏ । ସମ୍ବଲପୁର ତହସିଲର ମୃତ୍ତିକା କୌଣସି କୌଣସି ସ୍ଥାନରେ କୋମଳ ଏବଂ କେତେକ

ଅଂଶରେ ବରଗଡ଼ର ମୃତ୍ତିକାପଣ ଜଙ୍ଗଲ ଅଧିକ ଓ ବାଲି ବର୍ଷ । ଜଳର ସୁବନ୍ଧାଥିବାରୁ ଧାନ୍ୟ ଫସଲ ଭଲହୁଏ । ଶାରଦ ଫସଲ ଶତକଡ଼ା ୧୬, ଭୋଗେଇ ଫସଲ ଶତକଡ଼ା ୭୩ ଓ ରବି ଫସଲ ଶତକଡ଼ା ୧୧ ଅଟେ । ଜଙ୍ଗଲରେ ବାଘ, ଚିତାବାଘ, ଭାଲୁ, ହରିଣ ପ୍ରଭୃତି ପଶୁ ପ୍ରଚୁର ଦେଖାଯାନ୍ତି । ଗୋଚରଭୂମି ଅଳ୍ପଥିବାରୁ ପାଳିତପଶୁଙ୍କ ସଂଖ୍ୟା ଅତି ଅଳ୍ପ ଏବଂ ମଧ୍ୟ ଦୁର୍ବଳ । ଲୋକେ ମେଣ୍ଢା ଓ ଛେଳି ପୋଷନ୍ତି ।

୫ । ସ୍ଥଳ ଓ ଜଳପଥ ।

ସଡ଼କମାନଙ୍କ ମଧ୍ୟରେ ରାୟପୁରରୁ ସମ୍ବଲପୁର ସଡ଼କ, କଟକରୁ ସୋନପୁର ସଡ଼କ ଓ ସମ୍ବଲପୁରରୁ ବଲାଙ୍ଗୀରର ସଡ଼କ ପ୍ରଧାନ । ବେଙ୍ଗଲ ନାଗପୁର ରେଲଓ୍ୱେର ପ୍ରଧାନ ଲାଇନ ଏହି ଜିଲ୍ଲାରେ ୩୦ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ଧୁରୁଆ, ଝାରସୁଗୁଡ଼ା, ସମ୍ବଲପୁର ବ୍ରାଞ୍ଚ, ଇବ, ବେଲପାହାଡ଼, ହେମଗିର, ବାଗଡ଼ିହ, ଜାମଗାଁ ପ୍ରଧାନ ରେଲଷ୍ଟେସନ । ସମ୍ବଲପୁର ବ୍ରାଞ୍ଚ ଝାରସୁଗୁଡ଼ା, ଲପଙ୍ଗା, ରେଙ୍ଗାଲି ଷ୍ଟେସନ ଦେଇ ସମ୍ବଲପୁର ପର୍ଯ୍ୟନ୍ତ ଯାଇଅଛି । ସମ୍ବଲପୁର ଷ୍ଟେସନର ଆରଙ୍ଗ ପର୍ଯ୍ୟନ୍ତ ମହାନଦୀରେ ସର୍ବଦା ନୌକା ଯିବା ଆସିବା କରେ ।

୬ । ଲୋକ ସଂଖ୍ୟା, ଭାଷା ଓ ଜୀବିକା ।

ଏହି ଜିଲ୍ଲାର ଲୋକସଂଖ୍ୟା ୭୮୯୪୬୬ ମଧ୍ୟରୁ ହିନ୍ଦୁ ଶତକଡ଼ା ୯୮ ଓ ଅନ୍ୟ ଜାତି ୨ ଜଣ । ମୁସଲମାନ ପ୍ରାୟ ୩୫୦୦ ଜଣ । ସମସ୍ତ ଲୋକସଂଖ୍ୟା ମଧ୍ୟରୁ ଗଣ୍ଡ ୮୪ ହଜାର, କୋଲତା ୯୨ ହଜାର, ଶବର ୬୯ ହଜାର, ଗଉଡ଼ ୯୮ ହଜାର ଓ ଗୋଣ୍ଡ ୫୦ ହଜାର ଅଛନ୍ତି । ଏଠାରେ ୧୧୬ ଜଣ ଖ୍ରୀଷ୍ଟାନ ଓ ୩୦୦୦ ଜଣ ଦେଶୀୟ ଖ୍ରୀଷ୍ଟାନ ଅଛନ୍ତି । ଜିଲ୍ଲାର ପ୍ରଧାନ ଭାଷା ଓଡ଼ିଆ । ପ୍ରାୟ ଶତକଡ଼ା ୮୯ ଜଣ ଓଡ଼ିଆ ଭାଷାରେ କଥା କହନ୍ତି । ଏହି ଜିଲ୍ଲାର ପାର୍ବତ୍ୟ ପ୍ରଦେଶର ଲୋକମାନେ କେତେକ ଓରାଁଓ ଭାଷା, କେତେକ

ବୋଲ ଭାଷା ଓ କେତେକ ଖାଣ୍ଟିଆ ଭାଷା ବ୍ୟବହାର କରନ୍ତି ।
ଶତକଡା ୭୨ ଜଣ କୃଷିଦ୍ୱାରା ଜୀବିକା ନିର୍ବାହ କରନ୍ତି । କେତେକ
ଲୋକ ସମ୍ବଲପୁରୀ ମଠା ନାମକ ରେଶମୀବସ୍ତ୍ର ବୁଣି ଚଳନ୍ତି ଓ
କେତେକ ପିତଳ ବାସନ ତିଆରିକରି ଚଳନ୍ତି ।

୨ । ସବଡିଭିଜନ ଓ ସହର ।

(୧) ସମ୍ବଲପୁର ସଦର ସବଡିଭିଜନ । ଏହାର ଉତ୍ତରରେ
ଶାଗଣଗଡ଼ ଓ ଗାଙ୍ଗପୁର, ପୂର୍ବରେ ଗାଙ୍ଗପୁର, ବାମଣ୍ଡା ଓ
ରେଢ଼ାଖୋଲ, ଦକ୍ଷିଣରେ ବରଗଡ଼ ସବଡିଭିଜନ ଓ ପଶ୍ଚିମରେ ମଧ୍ୟ
ପ୍ରଦେଶ । ମହାନଦୀ ଏହି ସବଡିଭିଜନର ପଶ୍ଚିମ ଓ ଦକ୍ଷିଣ ଦିଗରେ
ପ୍ରବାହିତ । ଲୋକସଂଖ୍ୟା ୩୦୩୭୧୯ ଓ କ୍ଷେତ୍ରଫଳ ୧୭୧୨ବର୍ଗ
ମାଇଲ । ଏଠାରେ ୭୬୩ ଗୋଟି ଗ୍ରାମ ଅଛି । ସମ୍ବଲପୁର ଏହି
ଜିଲାର ରାଜଧାନୀ ଓ ମହାନଦୀକୂଳସ୍ଥ ପ୍ରଧାନ ନଗର । ଏଠାରେ
ସରକାରଙ୍କ କଚେରୀ, ଜିଲାସ୍କୁଲ, ଡାକ୍ତରଖାନା ଅଛି । ଝାର୍ସୁଗୁଡା
ରେଙ୍ଗାଲି, ଶାସନ, ବାଜପୁର ପ୍ରଧାନ ସ୍ଥାନ ।

(୨) ବରଗଡ଼ ସବଡିଭିଜନର ଉତ୍ତରରେ ସମ୍ବଲପୁର, ପୂର୍ବରେ
ମହାନଦୀ ଦକ୍ଷିଣରେ ସୋନପୁର ଓ ପାଟଣା ରାଜ୍ୟ ଓ ପଶ୍ଚିମରେ
ମଧ୍ୟପ୍ରଦେଶ । ଏହାର କ୍ଷେତ୍ରଫଳ ୨୨୧୨ ବର୍ଗ ମାଇଲ ଓ ଲୋକ
ସଂଖ୍ୟା ୪୮୫୭୮୭, ଗ୍ରାମସଂଖ୍ୟା ୧୨୦୬ । ଏଠାରେ ୯ଖଣ୍ଡି
ଜମିଦାରୀ ରାଜ୍ୟ ଅଛି । ବରଗଡ଼, ବରପାଲି, ସୋହେଲା, ବେଦନ
ପ୍ରଧାନସ୍ଥାନ ।

## ଅନୁଗୁଳ ଜିଲା ।

### ୧ । ପ୍ରାକୃତିକ ଶିକ୍ଷା ।

ଅନୁଗୁଳ ଜିଲା ଅନୁଗୁଳ ଓ ଖଣ୍ଡମାଳ ଏହି ଦୁଇ
ସବଡିଭିଜନରେ ବିଭକ୍ତ । ଅନୁଗୁଳର ଆକାର ତ୍ରିଭୁଜପରି । ଏହାର

ଉତ୍ତରରେ ରେଢ଼ାଖୋଲ ଓ ବାମଣ୍ଡା, ପୂର୍ବରେ ତାଳଚେର, ଢେଙ୍କାନାଳ ଓ ହିନ୍ଦୋଳ, ଦକ୍ଷିଣରେ ଦଶପଲ୍ଲା ଓ ନରସିଂହପୁର ଏବଂ ପଶ୍ଚିମରେ ଅଠମଲ୍ଲିକ । ଏହାର ପର୍ବତଶ୍ରେଣୀ ସମୁଦ୍ରସମତଳଠାରୁ ହାରାହାରି ୧୦୮୦ ଫୁଟ ଉଚ୍ଚ । ଏଠାରେ ଅନେକ ଜଙ୍ଗଲ ଅଛି । ଏହାର ଦକ୍ଷିଣାଂଶଭୂମି ଦକ୍ଷିଣପଶ୍ଚିମ ଅଞ୍ଚଳକୁ ଓ ଉତ୍ତରାଂଶ ଭୂମି ଉତ୍ତର ଅଞ୍ଚଳକୁ ଢାଲୁ । କ୍ଷେତ୍ରଫଳ ୮୮୧ ବର୍ଗମାଇଲ । କନ୍ଧମାଳର ଆକାର ପ୍ରାୟ ସମାନ୍ତର ଚତୁର୍ଭୁଜ ପରି । ଏହାର ଉତ୍ତର ଓ ପୂର୍ବରେ ବୌଦ୍ଧରାଜ୍ୟ, ଦକ୍ଷିଣରେ ଗଞ୍ଜାମ ଜିଲା ଏବଂ ପଶ୍ଚିମରେ ବୌଦ୍ଧରାଜ୍ୟ ଅବସ୍ଥିତ । କ୍ଷେତ୍ରଫଳ ୮୦୦ ବର୍ଗମାଇଲ । କନ୍ଧମାଳ-ଶ୍ରେଣୀ ସମୁଦ୍ରସମତଳରୁ ୧୭୭୦ ଫୁଟ ଉଚ୍ଚ । ଏହା ଦୁଇଭାଗରେ ବିଭକ୍ତ । ମଧ୍ୟଭାଗର ପଶ୍ଚିମ ଓ ଦକ୍ଷିଣ ପର୍ବତମୟ ଅଂଶ ଏବଂ କ୍ଷେତ ଓ ଖୋଲ ଅଂଶ । ପର୍ବତମାନ ୩୧୧୧ରୁ ୩୫୧୧ ଫୁଟ ପର୍ଯ୍ୟନ୍ତ [illegible]ଉଚ୍ଚ । ଭୂମି ଦକ୍ଷିଣରୁ ଉତ୍ତରକୁ ଢାଲୁ ।

୨ । ନଦୀ ।

ମହାନଦୀ ବ୍ୟତୀତ ଅନୁଗୁଳର ସମସ୍ତ ନଦୀ ପାର୍ବତ୍ୟ । ଏହି ନଦୀମାନଙ୍କ ସାହାଯ୍ୟରେ ଅନୁଗୁଳର ଉତ୍ତରାଂଶର ଜଳ ବ୍ରାହ୍ମଣୀରେ ଏବଂ ଦକ୍ଷିଣାଂଶର ଓ କନ୍ଧମାଳର ଜଳ ମହାନଦୀରେ ପଡ଼େ । କେବଳ ବର୍ଷାସମୟରେ ଏହି ସବୁ ନଦୀ ଜଳପୂର୍ଣ୍ଣ ଥାଏ । ନଦୀର ଉଭୟ କୂଳ ଉଚ୍ଚ ଓ ପ୍ରସ୍ତରମୟ । ତେଣୁ ନଦୀର ଜଳ ଶୁଷ୍କ ଜମିର ଉପକାରରେ ଆସେ ନାହିଁ । ମହାନଦୀର ବାମ ପାର୍ଶ୍ୱରେ ବରଝୋର ଓ ଦକ୍ଷିଣପାର୍ଶ୍ୱରେ ବାଘ, ସାଲୁଙ୍କି ଓ ଘିରାମନ୍ଦା ନଦୀମାନ ଆସି ଏହା ସହିତ ମିଶିଅଛନ୍ତି । ଅନୁଗୁଳରୁ ତିକରା ୧୨୫ ମାଇଲ, ନିଗ୍ରା ୧୧୧ ମାଇଲ ଓ ନନ୍ଦୀରା ୩୫ ମାଇଲ ବୋହିଆସି ବ୍ରାହ୍ମଣୀରେ ପଡ଼ିଅଛନ୍ତି । ସିଂଗଡ଼ା ୨୨ ମାଇଲ ପ୍ରବାହିତ ହୋଇ ବ୍ରାହ୍ମଣୀରେ ପଡ଼ିଅଛି ।

୩ । ବର୍ଷା ଓ ଜଳବାୟୁ ।

(୧) ଜୁଲାଇ ଓ ଅଗଷ୍ଟମାସରେ ବେଶୀ ବର୍ଷା ହୁଏ । ବର୍ଷମଧ୍ୟରେ ହାରାହାରି ୫୩ ଇଞ୍ଚ ବର୍ଷା ହୁଏ । ବୃଷ୍ଟି ପରିମାଣ ଜୁନମାସରେ ୧୧ ଇଞ୍ଚ, ଜୁଲାଇରେ ୧୨ ଇଞ୍ଚ, ଅଗଷ୍ଟରେ ୧୧.୫ ଇଞ୍ଚ, ସେପଟେମ୍ବରରେ ୯.୨ ଇଞ୍ଚ ଓ ଅକ୍ଟୋବରରେ ୪.୫ ଇଞ୍ଚ ଅଟେ । ବର୍ଷା ସବୁ ସ୍ଥାନରେ ସମାନ ହୁଏ ନାହିଁ ।

(୨) ଅନୁଗୁଳ ସଃ ଡ଼ିଃ ର ଜଳବାୟୁ ଅତ୍ୟନ୍ତ ଗରମ । ମାର୍ଚ୍ଚରୁ ଜୁନର ମଧ୍ୟଭାଗ ପର୍ଯ୍ୟନ୍ତ ଗ୍ରୀଷ୍ମକାଳ । ଅପ୍ରେଲ, ମେ, ଜୁନରେ ଅଧିକ ଗ୍ରୀଷ୍ମ ହୁଏ । ନଭେମ୍ବରରୁ ଫେବୃୟାରୀ ପର୍ଯ୍ୟନ୍ତ ଶୀତକାଳ ଏବଂ ଜଳବାୟୁ ଏ ସମୟରେ ଅସ୍ୱାସ୍ଥ୍ୟକର । ବନମାଳର ଜଳବାୟୁ ଅସ୍ୱାସ୍ଥ୍ୟକର ଓ ଶୁଷ୍କ । ଏଠାରେ ମେଲେରିଆ ଜ୍ୱରର ପ୍ରଭାବ ଅଧିକ । ଅପ୍ରେଲ, ମେ ଓ ଜୁନର କେତେକ ଦିନ ପର୍ଯ୍ୟନ୍ତ ଗ୍ରୀଷ୍ମକାଳ । ଲୋକେ ଗ୍ରୀଷ୍ମକାଳସୁଦ୍ଧାରେ ମଧ୍ୟ ଶୀତବସ୍ତ୍ର ବ୍ୟବହାର କରନ୍ତି । ଅକ୍ଟୋବରରୁ ମାର୍ଚ୍ଚ ପର୍ଯ୍ୟନ୍ତ ଶୀତକାଳ । ଜୁନ ମାସରୁ ବର୍ଷା ଆରମ୍ଭ ହୁଏ । ଗ୍ରୀଷ୍ମ ଖୁବ୍ କମ ଜଣାପଡ଼େ ।

୪ । ଶସ୍ୟ ଓ ପଶୁ ।

(୧) ଅନୁଗୁଳର ୧୧ ଗୋଟି ପ୍ରଗନା ମଧ୍ୟରୁ ଟିକରପଡ଼ା ଓ ଢେଁକୀ ପ୍ରଗନାରେ ଜଙ୍ଗଲ ଅଧିକ ଏବଂ ପାଣ୍ଡଗଡ଼ା ଓ ଚଳମୂଳ ପ୍ରଗନାରେ ଜଙ୍ଗଲ ଅଳ୍ପ । ଏଠାରେ ଆବାଦଭୂମି ନ ଥିବାରୁ କୌଣସି ଫସଲ ହୁଏ ନାହିଁ । ବାକି ୭ ଗୋଟି ପ୍ରଗନା ମଧ୍ୟରେ ସ୍ଥାନେ ସ୍ଥାନେ ଜଙ୍ଗଲ ଓ ସ୍ଥାନେ ସ୍ଥାନେ ଆବାଦ ଭୂମି ଅଛି । ଧାନ୍ୟ ପ୍ରଧାନ ଫସଲ । ଏ ସ୍ଥାନର ଭୂମି କୃଷ୍ଣବର୍ଣ୍ଣ, ମସୃଣ, ବାଲିମିଶା, ଲାଲ ଓ ଧଳା । କୃଷ୍ଣବର୍ଣ୍ଣ ଓ ବାଲିମିଶା ଭୂମି ଛଡ଼ା ଅନ୍ୟ ସବୁ ଭୂମିରେ ଧାନ ହୁଏ । ପ୍ରଚୁର ଜଳ ନ ହେଲେ ଧାନ ହୁଏ ନାହିଁ । ଉର୍ବର ଭୂମିର ଉଚ୍ଚ ଅଂଶରେ ଖେରେଇ ଧାନ ଓ ହରଡ଼,

ବୋଲଥ ପ୍ରଭୃତି ଉଚ୍ଚଭାଳି ଫସଲ ଏବଂ ନିମ୍ନ ଅଂଶରେ ଶାରଦ ଧାନ ଜନ୍ମେ । କନ୍ଧମାଳ ଜଙ୍ଗଲ ଓ ପର୍ବତରେ ପୂର୍ଣ୍ଣ । କେନ୍ତୁ ସ୍ଥାନେ ସ୍ଥାନେ ଘର ଗୃହପାଖରେ ଶସ୍ୟ ଜନ୍ମେ ଦେଖାଯାଏ । ଧାନ ଫସଲ କମ ହୁଏ । ଏହାର ଶୃଉ ଭାଗରୁ ଏକସ୍ତର ଶସ୍ୟ ଉତ୍ପନ୍ନର ଉପଯୁକ୍ତ । ମକ୍କା, ବଡ଼ଧାନ, ଅଖୁ, ମୁଗ, ହରଡ଼ ପ୍ରଧାନ ଫସଲ । ଏଠାରେ ଶତକଡ଼ା ୪୫ ଭାଗ ଧାନ ଓ ଅଖୁ, ୩୩ ଭାଗ ରବି ଫସଲ । ୨୦ ଭାଗ ତୈଳବୀଜ ଫସଲ ଓ ୨ ଭାଗ ଅନ୍ୟାନ୍ୟ ଫସଲ ହୁଏ ।

( ୨ ) ଏହି ଜିଲ୍ଲାରେ ଜଙ୍ଗଲ ବେଶୀ ଥିବାରୁ ବାଘ, ଭାଲୁ, ବାଲୁଆ, କୋକଶିଆଳ ଓ ବଣଅକୁକୁର ବେଶୀ ଦେଖାଯାନ୍ତି । ଏଠାରେ ପଶୁଚାରଣ ଭୂମି ପ୍ରଚୁର ଥିଲେ ମଧ୍ୟ ଯାନାସ୍ତ ଜଳ ଓ ପଶୁ ଖାଦ୍ୟୋପଯୋଗୀ ଘାସର ଅଭାବରୁ ପାଳିତ ପଶୁଙ୍କ ସଂଖ୍ୟା ଅତି କମ ।

୫ । ସ୍ଥଳ ଓ ଜଳପଥ ।

( ୧ ) ସ୍ଥଳପଥ ମଧ୍ୟରେ କଟକରୁ ସମ୍ବଲପୁର ରୋଡ଼, କଟକ, ଅନୁଗୁଳ, ଟିକରପଡ଼ା ରୋଡ଼; ବରଭଙ୍ଗାରୁ ଫୁଲବାଣୀ ରୋଡ଼ ଓ ରସଲକୁଣ୍ଡାରୁ ଫୁଲବାଣୀ ରୋଡ଼, ଏହି ୪ ମୋଟ ସ୍ଥଳପଥ ପ୍ରଧାନ ।

( ୨ ) ଲୋକମାନେ ନୌକାଦ୍ୱାରା ମହାନଦୀରେ ପାର ହୁଅନ୍ତି ।

୬ । ଲୋକ ସଂଖ୍ୟା, ଭାଷା ଓ ଜୀବିକା ।

( ୧ ) ଏହି ଜିଲ୍ଲାରେ ଲୋକ ସଂଖ୍ୟା ୧୮୨୫୬୪ ଜଣ ମଧ୍ୟରୁ ଶତକଡ଼ା ୬୩ ଜଣ ଖାଣ୍ଟି ହିନ୍ଦୁ ଏବଂ ଶତକଡ଼ା ୨୭ ଜଣ ଏନିମିଷ୍ଟ ଶ୍ରେଣୀର ଅନ୍ତର୍ଗତ । କେବଳ ୧୨୩ ଜଣ ଖ୍ରୀଷ୍ଟାନ ମଧ୍ୟରୁ ୧୧୭ ଜଣ ଦେଶୀୟ ଖ୍ରୀଷ୍ଟାନ । ଏଠାରେ ୫୦ ହଜାର କନ୍ଧ, ୪୧ ହଜାର କୃଷକ ୧୨ ହଜାର ଗଉଡ଼ ଓ ୨୪ ହଜାର ପାଣ ଅଛନ୍ତି ।

( ୨ ) ପ୍ରାୟ ଶତକଡ଼ା ୭୭ ଜଣ ଓଡ଼ିଆଭାଷାରେ ଓ ୨୨ ଜଣ କନ୍ଧ ବା କୁଇଭାଷାରେ କଥାବାର୍ତ୍ତା କରନ୍ତି । କୁଇଭାଷା ତେଲୁଗୁ ଭାଷା ମିଶ୍ରିତ ଦ୍ରାବିଡ଼ ଭାଷା ଅଟେ ।

( ୩ ) ଶତକଡ଼ା ୭୬ ଜଣ କୃଷି ଓ ୧୫ ଜଣ ଶିଳ୍ପ କାର୍ଯ୍ୟ କରି ଜୀବିକାନିର୍ବାହ କରନ୍ତି । କେବଳ ଶତକଡ଼ା ଜଣେ ବାଣିଜ୍ୟ ବ୍ୟବସାୟ କରି ଚଳନ୍ତି । ଅଳ୍ପ ସଂଖ୍ୟକ ଲୋକ ଲୁଗାବୁଣି, ପିତ୍ତଳବାସନ ତିଆରିକରି ଏବଂ ମସିଣା ଓ ଟୋକେଇ ବୁଣି ଜୀବିକା ନିର୍ବାହ କରନ୍ତି ।

୭ । ସବଡ଼ିଭିଜନ ଓ ସହର ।

ପୂର୍ବକାଳରୁ ଅନୁନାମକ କନ୍ଧଶାସନକର୍ତ୍ତାଙ୍କ ନାମାନୁସାରେ ଏହାର ନାମ ଅନୁଗୁଳ ହୋଇଅଛି । ଏହାର ଲୋକ ଓ ଗ୍ରାମସଂଖ୍ୟା ଯଥାକ୍ରମେ ୧୦୮୩୧୫ ଓ ୪୬୭ ଅଟେ । ଅନ୍ୟ ଜିଲ୍ଲାପରି ଏଠାରେ କୌଣସି ବଡ଼ ସହର ନାହିଁ । ଏହାର ରାଜଧାନୀ ଅନୁଗୁଳ । ଏଠାରେ ଡେପୁଟୀକମିଶନଙ୍କର କଚେରୀ, ହାଇସ୍କୁଲ ଓ ଡାକ୍ତରଖାନା ଅଛି । ପୁରୁଣାଗଡ଼ ପୂର୍ବ ରାଜଧାନୀ । ହୁଲପଙ୍ଗ ପ୍ରଧାନ ନଗର । ବଲଙ୍ଗ, ଜନ୍ତମେଘ, ପୁରୁଣାକୋଟ ଓ ଡଙ୍କଗଡ଼ କମଳାଲେମ୍ବୁ ପାଇଁ ବିଖ୍ୟାତ । ହାତୀଖାଲରେ ଅନେକ ବନ୍ୟହସ୍ତୀ ଦେଖାଯାନ୍ତି । ତାଳମୂଳ, ମାଣିକଯୋଡ଼ି ଓ ଜଗନ୍ନାଥପୁରରେ ଅଭ୍ର ମିଳେ । କନ୍ଧମାଳ ସବଡିଭିଜନର ଲୋକ ଓ ଗ୍ରାମ ସଂଖ୍ୟା ଯଥାକ୍ରମେ ୭୪୨୫୯ ଓ ୧୦୯୫ ଅଟେ । କନ୍ଧମାଳରେ ହଳଦୀ ମିଳେ । ହଳଦୀ କ୍ଷେତ୍ରରେ ନରବଳି ଦେବାର ପ୍ରଥା ପୂର୍ବେ ପ୍ରଚଳିତ ଥିଲା । ରାଜଧାନୀ ଫୁଲବାଣୀ ଅଟେ । ବଳଗଡ଼ା, ଖଜୁରୀପଡ଼ା ଓ ଦେରୁପଡ଼ା ପ୍ରଧାନ ଗ୍ରାମ ।

———

# ଓଡ଼ିଶାର ଦେଶୀୟ ରାଜ୍ୟ ।

## ଦେଶୀୟ ରାଜ୍ୟର ନାମ ।

ବର୍ତ୍ତମାନ ଓଡ଼ିଶାରେ ୨୪ ଗୋଟି ଦେଶୀୟ ରାଜ୍ୟ ଅଛି । ଯଥା—

ମୟୂରଭଞ୍ଜ, ନୀଳଗିରି, କେନ୍ଦୁଝର, ତାଳଚେର, ପାଲଲହରା, ଢେଙ୍କାନାଳ, ହିନ୍ଦୋଳ, ଅଠଗଡ଼, ତିଗିରିଆ, ବଡ଼ାମ୍ବା ନରସିଂହପୁର ଅଠମଲ୍ଲିକ, ବୌଦ, ଦଶପଲ୍ଲା, ଖଣ୍ଡପଡ଼ା, ନୟାଗଡ଼, ରଣପୁର, ବାମଣ୍ଡା, ବଣେଇ, ଗାଙ୍ଗପୁର, କଳାହାଣ୍ଡି, ପାଟଣା, ରେଢ଼ାଖୋଲ ଓ ସୋନପୁର ।

## ୧ । ଚତୁଃସୀମା ଓ ଢାଲୁ ।

ସମସ୍ତ ଦେଶୀୟ ରାଜ୍ୟର ଉତ୍ତରରେ ଜଗଦୀଶପୁର ରାଜ୍ୟ, ରାଞ୍ଚି ଓ ମେଦିନୀପୁର ଜିଲ୍ଲା, ପୂର୍ବରେ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା, ଦକ୍ଷିଣରେ ଗଞ୍ଜାମ ଜିଲ୍ଲା, କନ୍ଧମାଳ ସ: ଡ଼ି: ଓ ଭିଜାଗାପଟ୍ଟମ ଜିଲ୍ଲା ଏବଂ ପଶ୍ଚିମରେ ଭିଜାଗାପଟ୍ଟମ ଜିଲ୍ଲା, ସମ୍ବଲପୁର ଜିଲ୍ଲା; ରାୟପୁର ରାଜ୍ୟ ଓ ରାୟଗଡ଼ ଜିଲ୍ଲା ଅବସ୍ଥିତ ।

ଏହି ରାଜ୍ୟର ପର୍ବତଶ୍ରେଣୀ ଜଳବିଭାଜକର କାର୍ଯ୍ୟ କରେ । ଦକ୍ଷିଣାଂଶର ଭୂମି ଉତ୍ତର ଅଡ଼କୁ ଗଡ଼ାଣିଆ । ଏହି ଅଂଶର ଜଳ ମହାନଦୀରେ ପଡ଼େ । ମହାନଦୀର ଉତ୍ତରାଂଶର ଭୂମି ଉତ୍ତର ଅଡ଼କୁ କ୍ରମେ ଉଚ୍ଚ । ନଦୀପାର୍ଶ୍ୱସ୍ଥ ଭୂମି ୧୦୦୦ ଫୁଟ ଓ ପର୍ବତ ପାର୍ଶ୍ୱସ୍ଥ ଭୂମି ୧୫୦୦ ଫୁଟ ଉଚ୍ଚ । ନରସିଂହପୁର ପାହାଡ଼ର ଦକ୍ଷିଣାଂଶ ଜଳ ମହାନଦୀରେ ଓ ଉତ୍ତରାଂଶ ଜଳ ବ୍ରାହ୍ମଣୀରେ ପଡ଼େ । କେନ୍ଦୁଝରର ପାର୍ବତ୍ୟ ପ୍ରଦେଶର ଭୂମି ବ୍ରାହ୍ମଣୀନଦୀର ଉପକୂଳ ପର୍ଯ୍ୟନ୍ତ କ୍ରମେ କ୍ରମେ ଢାଲୁ । ଏହି ପର୍ବତ ଓ ଜଙ୍ଗଲମୟ ପ୍ରଦେଶର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋହର, ସ୍ଥାନେ ସ୍ଥାନେ ପର୍ବତ ମଧ୍ୟରେ ସୁନ୍ଦର ଅପ୍ରଶସ୍ତ ପଥ ଅଛି । ଛେଳଅ ଜଳପ୍ରପାତ ବଣେଇ ରାଜ୍ୟରେ ଅବସ୍ଥିତ । ପ୍ରାୟ ୭୧୦୮ ଫୁଟ ଉପରୁ ଜଳ ପଡ଼େ । କଳାହାଣ୍ଡି

ରାଜ୍ୟରେ ଅନେକ ଉଚ୍ଚ ପର୍ବତ ଅଛି । ସେମାନଙ୍କ ମଧ୍ୟରୁ କରଲପାଟ ୩୯୮୧ ଫୁଟ, ବଫଲ୍ୟାମାଳୀ ୩୫୮୭ ଫୁଟ, ଝୀକରଗୁରା ୩୬୮୩ ଫୁଟ ଓ ସାପୋଶୃଙ୍ଗ ୪୪୮୨ ଫୁଟ ଉଚ୍ଚ । ଶେଷୋକ୍ତ ଶୃଙ୍ଗଟି ଓଡ଼ିଶାମଧ୍ୟରେ ସର୍ବୋଚ୍ଚ ଶୃଙ୍ଗ । ଇନ୍ଦ୍ରାବତୀ ନଦୀ ଏହି ସମସ୍ତ ପର୍ବତରୁ ବାହାରି ଗୋଦାବରୀରେ ପଡ଼ିଅଛି । କଳାହାଣ୍ଡିର ବାଙ୍କୋସାମୋ ୪୧୮୨, କରଲ୍ଲପାଟ ପ୍ଲେଟୋ ୩୯୮୧, ପାଲଲହଡ଼ାର ମଲ୍ଲୟଗିରି ୩୮୯୫ ମୟୂରଭଞ୍ଜର ମେଘାସନ ୩୮୨୪, କଳାହାଣ୍ଡିର ଝୀକରଗୁରା ୩୬୮୩, ବଣେଇର ମନକାର-ନଚା ୩୬୩୯ ଓ ବଫଲ୍ୟୁମାଳୀ ୩୫୮୭, ବାଦାମପାହାଡ଼ ୩୫୨୫ ଓ କୁମ୍ବୀଚାର ୩୪୯୦ ଓ ଛେଲଅଟେ ୩୩୮୦, କେନ୍ଦୁଝରର ଗନ୍ଧମାଦନ ୩୪୭୯, ଠାକୁରାଣୀ ୩୦୦୩ ଓ ଢୋଲକ ୨୫୭୭, ଅଠମଲ୍ଲିକର ଅଠମଲ୍ଲିକ ୨୯୪୮, ଦଶପଲ୍ଲାର ଗୋୟାଲଦେଶ ୨୫୦୭, ନୟାଗଡ଼ର ସୁଲିଆ ୨୦୯୮ ଓ ଢେଙ୍କାନାଳର କପିଲାସ ୨୦୯୮ ଫୁଟ ଉଚ୍ଚ ।

### ୩ । ନଦୀ ।

ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ବୁଢ଼ାବଳଙ୍ଗ, ଅଙ୍ଗ ଓ ତେଲ ଏହି ରାଜ୍ୟର ପ୍ରଧାନ ନଦୀ । ମହାନଦୀ ସୋନପୁର ରାଜ୍ୟରେ ୩୦ ମାଇଲ ପ୍ରବାହିତ ହୋଇ ଦକ୍ଷିଣରେ ବୌଦ, ଦଶପଲ୍ଲା ଓ ଖଣ୍ଡପଡ଼ା ଏବଂ ଉତ୍ତରରେ ଅଠମଲ୍ଲିକ, ନରସିଂହପୁର, ବଡ଼ମ୍ବା, ଟିଗିରିଆ ଓ ଅଠଗଡ଼ ରାଜ୍ୟ ଦେଇ କଟକ ଜିଲାରେ ପ୍ରବେଶ କରିଅଛି । ସାପୁଆ, ବଡ଼ାଢଳ ଓ ମାହ୍ନା ଉପନଦୀମାନ ଉତ୍ତର ଏବଂ କୁସୁମୀ, କମାଇ, ଯୋରାପ, ହାଳାଭଣ୍ଡା, ଗାନହୁଳୀ, ବେଲସଙ୍କୀ, ବାଘ, ତେଲ ଓ ଅଙ୍ଗ ଉପନଦୀମାନ ଦକ୍ଷିଣରୁ ଆସି ମହାନଦୀରେ ପଡ଼ିଅଛନ୍ତି । ବୈତରଣୀ ନଦୀ କେନ୍ଦୁଝରରୁ ବାହାରି କେନ୍ଦୁଝର ଓ ମୟୂରଭଞ୍ଜ ମଧ୍ୟଦେଇ ପୂର୍ବକୁ ପ୍ରବାହିତ ହୋଇଅଛି ।

ବୁଢ଼ାବଳଙ୍ଗ ମୟୂରଭଞ୍ଜ ରାଜ୍ୟରୁ ବହିର୍ଗତ ଓ ବାଲେଶ୍ୱର ଜିଲ୍ଲା ମଧ୍ୟରେ ପ୍ରବାହିତ । ଗଙ୍ଗାହାର ଓ ସ୍ୱଳ୍ପ ପ୍ରଧାନ ଉପନଦୀ । କଳାହାଣ୍ଡିର ହାତନଦୀ ତେଲନଦୀରେ ଓ ତେଲନଦୀ ମହାନଦୀରେ ପଡ଼ିଅଛି । ଅଙ୍ଗନଦୀ ସମ୍ବଲପୁର ଜିଲ୍ଲାର ବୁଢ଼ାସମ୍ବର ରାଜ୍ୟରୁ ବାହାରି ମହାନଦୀରେ ପଡ଼ିଅଛି ।

### ୪ । ପଶୁ, ଶସ୍ୟ ଓ ଖଣିଜ ପଦାର୍ଥ ।

(୧) ସମସ୍ତ ଦେଶୀୟ ରାଜ୍ୟର ଅଧିକାଂଶ ସ୍ଥାନ ପର୍ବତ ଓ ଅରଣ୍ୟମୟ । ବାଘ, ଗଧିଆ, ଚିତାବାଘ, ବନ୍ୟକୁକ୍କୁର, ଭାଲୁ, ହୋଡ଼ଶିଅଲୀ ଓ ଅନେକ ପ୍ରକାର ବନ୍ୟଜନ୍ତୁ ଅଧିକ ଦେଖାଯାନ୍ତି । ମୟୂର ଓ ଅନ୍ୟାନ୍ୟ ପକ୍ଷୀ ମଧ୍ୟ ଦେଖାଯାନ୍ତି । ମୟୂରଭଞ୍ଜରେ ମୟୂର ବଧ ନିଷେଧ । ମହାନଦୀର ଉତ୍ତର ଓ ପୂର୍ବାଂଶରେ ପ୍ରଚୁର ହସ୍ତୀ ଦେଖାଯାନ୍ତି ।

(୨) କଟକ ଜିଲ୍ଲାରେ ଯେପରି ବର୍ଷ ଅଭାବରେ କେନାଲଦ୍ୱାରା କୃଷିକାର୍ଯ୍ୟ ସାଧିତ ହୁଏ; ଏଠାରେ କେନାଲ ଅଭାବରୁ ସେପରି ହୁଏ ନାହିଁ । କେବଳ ବର୍ଷା ଉପରେ କୃଷିକାର୍ଯ୍ୟ ସମ୍ପୂର୍ଣ୍ଣ ନିର୍ଭର କରେ । ବାମଣ୍ଡା ଓ ଢେଙ୍କାନାଳରେ ଅଳ୍ପ କାଳ କେନାଲ ଖୋଳା ଆରମ୍ଭ ହୋଇଅଛି । ଧାନ, ମକା, ବଡ଼ଧାନ, ତୈଳବୀଜ ଓ ଇକ୍ଷୁ ପ୍ରଧାନ ଫସଲ । ଆଠମଲ୍ଲିକ, ବାମଣ୍ଡା, ବଣେଇ, କଳାହାଣ୍ଡି, କେନ୍ଦୁଝର, ପାଲଲହଡ଼ା ଓ ରେଢ଼ାଖୋଲର ପାର୍ବତ୍ୟ ଓ ଅରଣ୍ୟମୟ ସ୍ଥାନରେ ଫସଲ ହୁଏ ନାହିଁ । କଳାହାଣ୍ଡିରେ ଗହମ ଓ ଆଖୁ ଚାଷ ଭଲ ହୁଏ ।

(୩) ତାଳଚେରରେ ପଥରକୋଇଲାର ଖଣିଅଛି । ମହାଦେବ ଗୁପ୍ତ ଓ ଅଠଗଡ଼ଗୁପ୍ତରେ କଦମ୍ବ ବର୍ଣ୍ଣର ପଥର ମିଳେ । ଅନ୍ୟାନ୍ୟ ଦେଶୀୟ ରାଜ୍ୟରେ ଶ୍ଳେଟ, ପଥରକୋଇଲା ଓ ଅଭ୍ର ମିଳେ । ମୟୂରଭଞ୍ଜରେ ଲୁହାର ଖଣିଅଛି ।

### ୫ । ଜଳବାୟୁ ।

ଏହି ସମସ୍ତ ରାଜ୍ୟରେ ଗ୍ରୀଷ୍ମକାଳରେ ଅଧିକ ଗ୍ରୀଷ୍ମ ଓ ଶୀତ କାଳରେ ଅଧିକ ଶୀତ ହୁଏ । କଳାହାଣ୍ଡି ଷ୍ଟେଟର ଦକ୍ଷିଣ ପୂର୍ବାଂଶସ୍ଥ ଉଚ୍ଚ ପ୍ରଦେଶର ଜଳବାୟୁ ଅତି ଭଲ କିନ୍ତୁ ନିମ୍ନସ୍ଥାନମାନଙ୍କରେ ମେଲେରିଆ ଜ୍ୱର ପ୍ରବଳ ହୁଏ । ମେଣ୍ଢାପଲ, ମଳୟଗିରି ଓ ହେମାଦନର ଜଳବାୟୁ ସ୍ୱାସ୍ଥ୍ୟକର । ଲୋକ ବାୟୁ ପରିବର୍ତ୍ତନ ନିମନ୍ତେ ଏଠାଙ୍କୁ ଆସନ୍ତି । ଏହିସବୁ ରାଜ୍ୟର ଶ୍ରେଷ୍ଠ ଶ୍ରେଷ୍ଠ ପର୍ବତ ଓ ଅରଣ୍ୟମୟ ପ୍ରଦେଶ ଅସ୍ୱାସ୍ଥ୍ୟକର । ମେଲେରିଆ ଜ୍ୱରର ପ୍ରକୋପ ବର୍ଷା ଓ ଶୀତ ଆରମ୍ଭରେ ଅଧିକ । କେତେକ ସ୍ଥାନର ଜଳ ପତ୍ରାଦି ପଚିବାଦ୍ୱାରା ଦୂଷିତ ହୁଏ ଏବଂ ସେହି ଦୂଷିତ ଜଳପାନଦ୍ୱାରା ଜ୍ୱର ଓ ପେଟମରା ରୋଗ ଜାତ ହୁଏ । ଜାନୁଆରୀରୁ ମେ ପର୍ଯ୍ୟନ୍ତ ଅଳ୍ପ ଓ ଜୁନରୁ ଅକ୍ଟୋବର ପର୍ଯ୍ୟନ୍ତ ଅଧିକ ବର୍ଷା ହୁଏ ।

### ୬ । ସଡ଼କ ଓ ରେଲରାସ୍ତା ।

(୧) ଏହି ସମସ୍ତ ରାଜ୍ୟରେ ଅନେକ ଚକା ରାସ୍ତା ଅଛି । ସେମାନଙ୍କ ମଧ୍ୟରୁ (୧) କଟକ, ସୋନପୁର, ସମ୍ବଲପୁର ରାସ୍ତା (୨) ସମ୍ବଲପୁର, ପାଟଣା, କଳାହାଣ୍ଡି ରାସ୍ତା (୩) କଟକ, ଅନୁଗୁଳ ସମ୍ବଲପୁର ରାସ୍ତା (୪) ରାୟପୁର, ଭବାନୀପାଟନା ରାସ୍ତା (୫) ଚମ୍ପୁଆ ବ୍ୟାସସରୋବର ରାସ୍ତା (୬) ବାରିପଦା, କରଞ୍ଜିଆ ରାସ୍ତା (୭) ବାମଣ୍ଡା ଦେଓଗଡ଼ ରାସ୍ତା (୮) ପାନପୋଷ, ବଣାଇଗଡ଼ ରାସ୍ତା ପ୍ରଧାନ । (୨) ବେଙ୍ଗଲ ନାଗପୁର ରେଲଓ୍ୱେ ଗାଙ୍ଗପୁର ଓ ବାମଣ୍ଡା ଷ୍ଟେଟରେ ଯଥାକ୍ରମେ ୪୫ ଓ ୨୨ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ଜରାଇକେଲା, ବିସଡ଼ା, ରାଉରକେଲା, ପାନପୋସ, କଳୁଙ୍ଗା, ଡୁମେରବାହାଲ, ରାଜଗାଙ୍ଗପୁର, ଡୋନାଗାମ, ଗାରପୋଷ, ବାମଡ଼ା, ଧରୁଆଡ଼ିହି ଓ ବାଗଡିହି ପ୍ରଧାନ ରେଲଓ୍ୱେ ଷ୍ଟେଶନ । ମୟୂରଭଞ୍ଜ ଷ୍ଟେଟ ରେଲଓ୍ୱେ ରୂପସାଠାରୁ ବାହାରି ଠାକୁରତଲା ଜଗପୁରା, କୋଖାଲ,

ବୈତରଣୀ, କୃଷ୍ଣଚନ୍ଦ୍ରପୁର,ଜାମସୋଲ, ବାଉପଦା; ଉଞ୍ଜପୁର, କ୍ୱଣ୍ଡଭ, ଭୁଡ଼ାଦରା, ବାଙ୍ଗିରିପୋଷି; କାଞ୍ଚନଦା, ନାଜୋଦା ଦେଇ ତାଲବନ୍ଧ ପର୍ଯ୍ୟନ୍ତ ଯାଇଅଛି । ଚଳନ୍ତିରେ ମୋଟର ବସ୍‌କାସରୋଡ଼ କଟକସ୍ଥ ନର୍ଗଣୀଠାରୁ ବାଙ୍କୀଯ କୃଷ୍ଣବାଟୀ, ରାଜାଆଠଗଡ଼, ଗଡ଼ ଢେଙ୍କାନାଳ, ହିନ୍ଦୋଳ ରୋଡ଼ ଓ ମେରାମଣ୍ଡଳୀ ଦେଇ ତାଲଚେର ପର୍ଯ୍ୟନ୍ତ ଯାଇଅଛି ।

୭ । ଭାଷା ଓ ଜୀବିକା ।

ସମସ୍ତ ଦେଶୀୟରାଜ୍ୟର ପ୍ରଧାନ ଭାଷା ଓଡ଼ିଆ । ଗାଙ୍ଗପୁର ବଣେଇ ଓ କେନ୍ଦୁଝରର କେତେକ ଲୋକ ମୁଣ୍ଡାରୀ ଓ ହୋ ଭାଷାରେ କଥାବାର୍ତ୍ତା କରନ୍ତି । ମୟୂରଭଞ୍ଜର ସାନ୍ତାଳମାନେ ସାନ୍ତାଳଭାଷା ଓ କୋଲାହାଣ୍ଡିର କନ୍ଧମାନେ କନ୍ଧଭାଷା ବ୍ୟବହାର କରନ୍ତି । ବର୍ତ୍ତମାନ କେତେକ ସାନ୍ତାଳ ଓ କନ୍ଧ ଓଡ଼ିଆ ଭାଷାରେ କଥାବାର୍ତ୍ତା କଲେଣି ।

(୨) ସମୁଦାୟ ଲୋକ ସଂଖ୍ୟାର ଶତକରା ୭୨ ଜଣ କୃଷିକାର୍ଯ୍ୟଦ୍ୱାରା ଜୀବିକା ନିର୍ବାହ କରନ୍ତି । ଅଳ୍ପ ସଂଖ୍ୟକ ଲୋକ ମଜୁରୀ ଓ ନାନାପ୍ରକାର ପେଶାଦ୍ୱାରା ଚଳନ୍ତି । ଖଣ୍ଡପଡ଼ା ଓ ନରସିଂହପୁରର କେତେକ ଲୋକ ପିତଳବାସନ ପ୍ରସ୍ତୁତ କରି ଓ ବୌଦର ବଣିଆମାନେ ସୁନାରୁପାର କାମ କରି ଚଳନ୍ତି । ଗାଙ୍ଗପୁରରେ ପଥରଚୂନର ବ୍ୟବସାୟ ଅଧିକ । ମୟୂରଭଞ୍ଜର କେତେକ ଲୋକ ଲୁହା ଓ କୋଇଲା ଖଣିରେ କାର୍ଯ୍ୟ କରି ଚଳନ୍ତି ।

୮ । ଶାସନ ପ୍ରଣାଳୀ ।

ପ୍ରତ୍ୟେକ ଦେଶୀୟ ରାଜ୍ୟ ଜଣେ ଜଣେ ରାଜାଙ୍କଦ୍ୱାରା ଶାସିତ ହୁଏ । ପ୍ରତ୍ୟେକ ରାଜାଙ୍କ ଅଧୀନରେ ଜଣେ ଜଣେ ଦେୱାନ ଓ ଅନ୍ୟାନ୍ୟ କେତେକ ରାଜକର୍ମଚାରୀ ଅଛନ୍ତି । ପୋଲିଟିକେଲ

ଏଜେଣ୍ଟ ଓ କମିସନସାହେବ ସମୟେ ସମୟେ ଦେଶ ଶାସନ ବିଷୟରେ ପରାମର୍ଶ ଦଅନ୍ତି ।

## ୧ । ରାଜ୍ୟ ଓ ନଗର ।

| ରାଜ୍ୟ | ରାଜଧାନୀ | ପ୍ରଧାନ ପ୍ରଧାନ ଗ୍ରାମ |
|---|---|---|
| ୧ । ମୟୂରଭଞ୍ଜ — | ବାରିପଦା — | ବହଲଦା, କପ୍ତିପଦା, ମାଣଡ଼ି, ଦାସପୁର । |
| ୨ । ନୀଳଗିରି — | ନୀଳଗିରି — | ଖଡ଼ଗପୁର, ଅଯୋଧ୍ୟା । |
| ୩ । କେନ୍ଦୁଝର — | କେନ୍ଦୁଝର — | ଆନନ୍ଦପୁର । |
| ୪ । ପାଲଲହରା — | ଲହଡ଼ା । | |
| ୫ । ତାଳଚେର | ତାଳଚେର — | ଗୋପାଳପୁର । |
| ୬ । ଢେଙ୍କାନାଳ — | ଢେଙ୍କାନାଳ — | ଭୁବନ, ମଢ଼ି । |
| ୭ । ହିନ୍ଦୋଳ — | ହିନ୍ଦୋଳ — | ରସୋଲ । |
| ୮ । ଅଠଗଡ଼ — | ଅଠଗଡ଼ । | |
| ୯ । ତିଗିରିଆ — | ତିଗିରିଆ, | ପାଙ୍ଗା । |
| ୧୦ । ବଡ଼ମ୍ବା — | ବଡ଼ମ୍ବା, | ମଯୂନପୁର । |
| ୧୧ । ନରସିଂହପୁର — | ନରସିଂହପୁର, | କାନପୁର । |
| ୧୨ । ଅଠମଲ୍ଲିକ — | ଅଠମଲ୍ଲିକ — | କଇନ୍ତାଗଡ଼, ଦଣ୍ଡପା । |
| ୧୩ । ବୌଦ — | ବୌଦ, | କୁମ୍ଭାଗଡ଼, ହଗପଣ୍ଡି । |
| ୧୪ । ଦଶପଲ୍ଲା — | ଦଶପଲ୍ଲା — | କୁଣ୍ଡବନ । |
| ୧୫ । ଖଣ୍ଡପଡ଼ା — | ଖଣ୍ଡପଡ଼ା — | କଣ୍ଟିଲୋ, ପଦ୍ମାବତୀ । |
| ୧୬ । ନୟାଗଡ଼ — | ନୟାଗଡ଼ — | ଇଟାମାଟି, ବରୁଦା । |
| ୧୭ । ରଣପୁର — | ରଣପୁର, | ଗୋପାଳପୁର । |
| ୧୮ । ବାମଣ୍ଡା — | ଦେଓଗଡ଼ । | |
| ୧୯ । ବଣେଇ — | ବଣେଇ । | |
| ୨୦ । ଗାଙ୍ଗପୁର — | ଗାଙ୍ଗପୁର, | ସୁଆଦ । |
| ୨୧ । କଳାହାଣ୍ଡି — | କଳାହାଣ୍ଡି — | ଜୁନାଗଡ଼, ମଦନପୁର, କାଶୀପୁର |

୧୨ । ପାଟଣା—    ପାଟଣା,— ବଲାଙ୍ଗିର, ବୋଲଙ୍ଗା ।

୧୩ । ରେଢ଼ାଖୋଲ—    ରାମପୁର ।

୧୪ । ସୋନପୁର—    ସୋନପୁର ।

ହରିହରପୁର ମୟୂରଭଞ୍ଜର ପ୍ରାଚୀନ ନାମ । ଏଠା ରାଜବଂଶର ସଙ୍କେତ ମୟୂରପୁଚ୍ଛ ଓ ଉପାଧି ଭଞ୍ଜ ଥିବାରୁ ଏପରି ନାମ ହୋଇଅଛି । ଏଠାରେ ମୟୂର ବଧ ନିଷେଧ । ରାଜଧାନୀ ବାରିପଦା । ଏଠାରେ କଚେରୀ, ହାଇସ୍କୁଲ, ଡାକ୍ତରଖାନା, ଡାକଘର ଅଛି, ରାଇରଙ୍ଗପୁରର ହାଟ ପ୍ରଧାନ । ମାଣଦୀରେ ଶିବମନ୍ଦିର ଅଛି, ରଗୁଆଁରେ କୀଚକେଶ୍ୱରଙ୍କ ମନ୍ଦିର ଅଛି । ଓଲମରା ତସର ଲୁଗା ସର୍ବାଶେ ପ୍ରସିଦ୍ଧ । ଖଡ଼ଖପୁରରେ ମୃଗୁନୀପଥରର ଖଣି ଅଛି, ଅଯୋଧ୍ୟାରେ ବୌଦ୍ଧକୀର୍ତ୍ତି ଅଛି । କେନ୍ଦୁଝରରେ ପଟାରର ତାର ପ୍ରସ୍ତୁତ ହୁଏ । ଦେଓଗାଁରେ କୁଶଳେଶ୍ୱର ମହାଦେବଙ୍କ ମନ୍ଦିର ଅଛି । କାଦଖୁଲ୍ଲର ଉଲ୍ଟହୂରରେ ଖଣ୍ଡାଧାର ଜଳପ୍ରପାତ; ଆନନ୍ଦପୁର, ଛେୟାଢପୁର, ପଦ୍ମାବଗୀ, ଇଠାମାଠି, କଣ୍ଟିଲୋ ପ୍ରଧାନ ବାଣିଜ୍ୟସ୍ଥାନ, ତାଳଚେରରେ ଲୁହା ଓ ପଥରକୋଇଲାର ଖଣି ଅଛି । କପିଳାସରେ ଶିବମନ୍ଦିର ଓ ନିର୍ଝର ଅଛି, ହିନ୍ଦୋଳରେ ଭଲ କମଳାଲେମ୍ବୁ ମିଳେ । ନୃଥଯାଣା ତସର ଓ ଖଣ୍ଡୁଆ ନିମନ୍ତେ ପ୍ରସିଦ୍ଧ । ଅଠମଲ୍ଲିକର ପ୍ରାଚୀନ ନାମ ଦଣ୍ଡପା । ଅଷ୍ଟମଲ୍ଲଙ୍କ ଦ୍ୱାରା ପୂର୍ବେ ଶାସିତ ହେଉଥିବାରୁ ଏହାର ଏପରି ନାମ ହୋଇଅଛି । ରଣାସୁର ନାମକ ଅସୁରର ନାମାନୁସାରେ ରଣପୁର ହୋଇଅଛି, ମାଣିଅବନ୍ଧରେ ମାଣିଅବନ୍ଧ ଲୁଗା ପ୍ରସ୍ତୁତ ହୁଏ । ବଇନ୍ତ୍ରାଗଡ଼ ନିକଟରେ ଉଷ୍ଣ ପ୍ରସ୍ରବଣ ଅଛି । କଣ୍ଟିଲୋରେ ନୀଳମାଧବଙ୍କ ମନ୍ଦିର ଅଛି । ଭୁଞ୍ଜବନରୁ ଜଗନ୍ନାଥଙ୍କ ରଥ ପାଇଁ କାଠ ଯାଏ ।

## ୧୦ । ଅଦର୍ଶ ପ୍ରଶ୍ନାବଳୀ ।

( ୧ ) ରାଜଧାନୀ ସହ ଦେଶୀୟ ରାଜ୍ୟମାନଙ୍କର ନାମ ଲେଖ ।
( ୨ ) ବୃହତ୍ତମ ଓ କ୍ଷୁଦ୍ରତମ ଦେଶୀୟ ରାଜ୍ୟର ନାମ କଅଣ ?
( ୩ ) ଏଠାରେ କି କି ଖଣିଜ ପଦାର୍ଥ ମିଳେ ?
( ୪ ) ପର୍ବତମାନଙ୍କର ନାମ କହ ।
( ୫ ) ନିମ୍ନଲିଖିତ ସ୍ଥାନମାନ କାହିଁକି ବିଖ୍ୟାତ ଓ କଟକର କେଉଁଦିଗରେ ଅବସ୍ଥିତ ? କୁଶଳେଶ୍ୱର, ଅଯୋଧ୍ୟା, ବାମଣ୍ଡା, ମାଣବୀ, ବୌଦ୍ଧ, ତାଳଚେର, ଚନ୍ଦମାଳ, କପିଳାସ ।

ସ ମା ପ୍ତ ।

---

କଟକ ଦତ୍ତପ୍ରେସରେ ଶ୍ରୀହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୨୮ ।